ରା:ସ୍ୱା:

# **ସତ୍ୟାନୁସରଣ**

## ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର



## ଅନୁବାଦକ

## ଶ୍ରୀ ଯତୀନ୍ଦ୍ର ମୋହନ ବସୁ

## ପ୍ରଥମ ମୁଦ୍ରଣ:

# : ସୂଚନା :

ପରମପ୍ରେମମୟ୍ ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ରଙ୍କ ଅନ୍ୟତମ ପ୍ରିୟ୍ଭକ୍ତ ଅତୁଳଚନ୍ଦ୍ର ଭଟ୍ଟାଚାର୍ଯ୍ୟ ପାବନାରୁ ଅନ୍ୟତ୍ର ବଦଳି ହୋଇଯାଇଥାନ୍ତି । ବିରହ-ବିଚ୍ଛେଦକାତର ଭକ୍ତ ପ୍ରେମାଶ୍ରୁ ବିସର୍ଜନ ପୂର୍ବକ ପ୍ରାର୍ଥନା କଲେ- ନିରନ୍ତର ଦିବ୍ୟ ଭାବଧାରାରେ ଅନୁପ୍ରାଣିତ ହୋଇ ରହିବା ଭଳି ଶ୍ରୀହସ୍ତଲିଖିତ ଅମୃତ ନିର୍ଦ୍ଦେଶ । ବଙ୍ଗଳା ୧୩୧୬ ସାଲରେ ବାଇଶି-ବର୍ଷ ବୟସରେ ଶ୍ରୀଶ୍ରୀଠାକୁର ଏକ ରାତ୍ରିରେ ଲିପିବଦ୍ଧ କରିଦେଲେ ତାଙ୍କର ଅମୃତ-ନିଷ୍ୟନ୍ଦୀ ସ୍ୱତଃ-ଉତ୍ସାରିତ ବାଣୀ । ଭକ୍ତର ପ୍ରାର୍ଥନା ଓହ୍ଲାଇ ଆଣିଲା ପୃଥିବୀ ପୃଷ୍ଠରେ ମନ୍ଦାକିନୀର ପୁଣ୍ୟଧାରା ଯାହାକି ସଞ୍ଜୀବିତ କରି ରଖିବ ତାଙ୍କୁ ଏବଂ ଯୁଗ ଯୁଗ ଧରି ପ୍ରତ୍ୟେକଟି ମଣିଷକୁ ।

ବଙ୍ଗଳା ୧୩୨୫ ସାଲରୁ ମୁଦ୍ରିତ ହୋଇ 'ସତ୍ୟାନୁସରଣ' ବହନ କରି ଚାଲିଛି ସେହି ଶାଶ୍ୱତ ମହାବାଣୀ ।

ଏହି ଓଡିଆ ସଂସ୍କରଣ ମୂଳ ବଙ୍ଗଳା ପୁସ୍ତକର ଅନୁବାଦ ମାତ୍ର ।

-ପ୍ରକାଶକ

ଭାରତର ଅବନତି (Degeneration) ସେହି ସମୟରୁ ଆରମ୍ଭ ହୋଇଛି ଯେଉଁସମୟରୁ ଭାରତବାସୀଙ୍କ ପାଖରେ ଅମୂର୍ତ୍ତ ଭଗବାନ ଅସୀମ ହୋଇ ଉଠିଛନ୍ତି-ଋଷିଙ୍କୁ ବାଦ୍ ଦେଇ ଋଷିବାଦର ଉପାସନା ଆରମ୍ଭ ହୋଇଛି ।

ଭାରତ ! ଯଦି ଭବିଷ୍ୟତ କଲ୍ୟାଣକୁ ଆବାହନ କରିବାକୁ ଚାହ, ତେବେ ସଂପ୍ରଦାୟଗତ ବିରୋଧ ଭୁଲି, ଜଗତର ପୂର୍ବପୂର୍ବ ଗୁରୁ ମାନଙ୍କ ପ୍ରତି ଶ୍ରଦ୍ଧାସଂପନ୍ନ ହୁଅ-ଆଉ ତୁମର ମୂର୍ତ୍ତ ଓ ଜୀବନ୍ତ ଗୁରୁ ବା ଭଗବାନଙ୍କ ପ୍ରତି ଆସକ୍ତ (Attached) ହୁଅ,- ଏବଂ ସେହିମାନଙ୍କୁହିଁ ସ୍ୱୀକାର କର ଯେଉଁମାନେ ତାଙ୍କୁ ଭଲପାଆନ୍ତି । କାରଣ, ପୂର୍ବବର୍ତ୍ତୀଙ୍କୁ ଅଧିକାର କରିହିଁ ପରବର୍ତ୍ତୀଙ୍କର ଆବିର୍ଭାବ ।

**********************************************************************************

ଅର୍ଥ, ମାନ, ଯଶ ଇତ୍ୟାଦି ପାଇବା ଆଶାରେ ମୋତେ ଠାକୁର ସଜାଇ ଭକ୍ତ ହୁଅ ନାହିଁ, ସାବଧାନ ହୁଅ- ଠକିଯିବ; ତୁମର ଠାକୁରତ୍ୱ ଜାଗ୍ରତ ନହେଲେ କେହି ତୁମର କେନ୍ଦ୍ର ବି ନୁହନ୍ତି, ଠାକୁର ବି ନୁହନ୍ତି- ଫାଙ୍କିଦେଲେ ତାହାହିଁ ପାଇବ ।

**********************************************************************************

# *** ସତ୍ୟାନୁସରଣ ***

ସର୍ବପ୍ରଥମ ଆମ୍ଭମାନଙ୍କୁ ଦୁର୍ବଳତା ବିରୁଦ୍ଧରେ ଯୁଦ୍ଧ କରିବାକୁ ହେବ । ସାହସୀ ହେବାକୁ ହେବ, ବୀର ହେବାକୁ ହେବ । ପାପର ଜ୍ୱଳନ୍ତ ପ୍ରତିମୂର୍ତ୍ତି ଏହି ଦୁର୍ବଳତା । ତେଣୁ, ଯେତେ ଶୀଘ୍ର ପାର ଏହି ରକ୍ତ ଶୋଷଣକାରୀ ଅବସାଦ ଉତ୍ପାଦକ Vampire (ଏକ ଜାତୀୟ ବାଦୁଡ଼ି; ଏମାନେ ନିର୍ବିବାଦରେ ଘୁମନ୍ତ ଜୀବଜନ୍ତୁ ମାନଙ୍କର ରକ୍ତ ଶୋଷଣ କରିଥାନ୍ତି ) କୁ । ସ୍ମରଣ କର ତୁମେ ସାହସୀ, ସ୍ମରଣ କର ତୁମେ ଶକ୍ତିର ତନୟ, ସ୍ମରଣ କର ତୁମେ ପରମପିତାଙ୍କ ସନ୍ତାନ । ଆଗେ ସାହସୀ ହୁଅ, ଅକପଟ ହୁଅ ତେବେ ଜଣାଯିବ ତୁମର ଧର୍ମରାଜ୍ୟରେ ପଶିବାର ଅଧିକାର ଜନ୍ମିଛି । ୧

ଏତେ ଟିକିଏ ଦୁର୍ବଳତା ଥିଲେ ମଧ୍ୟ ତୁମେ ଠିକ୍ ଠିକ୍ ଅକପଟ ହୋଇପାରିବ ନାହିଁ; ଆଉ ଯେତେଦିନ ତୁମର ମନ-ମୁହଁ ଏକ ନହେଉଛି, ସେତେଦିନ ତୁମର ମଳିନତା ଦେହରେ ହାତ ବି ପଡିବ ନାହିଁ । ୨

ମନ-ମୁହଁ ଏକ ହୋଇଗଲେ ଆଉ ଭିତରେ ମଇଳା ଜମି ପାରେନାହିଁ-ଗୁପ୍ତ ଆବର୍ଜନା ଭାଷାରେ ଭାସିଉଠେ । ପାପ ଯାଇ ତା' ଭିତରେ ବସା ବାନ୍ଧିପାରେ ନାହିଁ । ୩

ହଟିଯିବାଟା ବରଂ ଦୁର୍ବଳତା ନୁହେଁ, କିନ୍ତୁ ଚେଷ୍ଟା ନ କରିବା ହିଁ ଦୁର୍ବଳତା । ତୁମେ କୌଣସି କିଛି କରିବାକୁ ପ୍ରାଣପଣେ ଚେଷ୍ଟା କରି ମଧ୍ୟ ଯଦି ବିଫଳ ମନୋରଥ ହୁଅ, କ୍ଷତି ନାହିଁ । ତୁମେ ଛାଡନାହିଁ, ଏହି ଅମ୍ଳାନ ଚେଷ୍ଟାହିଁ ତୁମକୁ ମୁକ୍ତି ଆଡକୁ ନେଇଯିବ । ୪

ଦୁର୍ବଳ ମନ ଚିରକାଳହିଁ ସନ୍ଦିଗ୍ଧ,- ସେମାନେ କଦାପି ନିର୍ଭର କରିପାରନ୍ତି ନାହିଁ । ବିଶ୍ୱାସ ହରାଇଛନ୍ତି- ତେଣୁ ପ୍ରାୟ ରୁଗ୍ଣ, କୁଟିଳ, ଇନ୍ଦ୍ରିୟପରବଶ ହୋଇପଡନ୍ତି । ସେମାନଙ୍କ ନିକଟରେ ସାରା ଜୀବନଟା ଜ୍ୱାଳାମୟ । ଶେଷରେ ଅଶାନ୍ତିରେ ସୁଖ-ଦୁଃଖ ଡୁବିଯାଏ,- ସୁଖ କ'ଣ, ଦୁଃଖ କ'ଣ କହିପାରନ୍ତି ନାହିଁ; କହିଲେ ହୁଏତ କହନ୍ତି 'ବେଶ୍' ତା' ମଧ୍ୟ ଅଶାନ୍ତି; ଅବସାଦରେ ଜୀବନ କ୍ଷୟ ହୋଇଯାଏ । ୫

ଦୁର୍ବଳ ହୃଦୟରେ ପ୍ରେମଭକ୍ତିର ସ୍ଥାନ ନାହିଁ । ପରର ଦୁର୍ଦ୍ଦଶା ଦେଖି, ପରର ବ୍ୟଥା ଦେଖି, ପରର ମୃତ୍ୟୁ ଦେଖି ନିଜର ଦୁର୍ଦ୍ଦଶା, ବ୍ୟଥା ବା ମୃତ୍ୟୁର ଆଶଙ୍କା କରି ଭାଙ୍ଗିପଡିବା, ଝାଉଁଳି ପଡିବା ବା କାନ୍ଦି ଆକୁଳ ହେବା- ସେସବୁ ଦୁର୍ବଳତା । ଯେଉଁମାନେ ଶକ୍ତିମାନ୍, ସେମାନେ ଯାହାବି କରନ୍ତୁ, ସେମାନଙ୍କ ନଜର କିନ୍ତୁ ନିରାକରଣ ଦିଗରେ; ଯେପରି ସେସବୁ ଅବସ୍ଥାରେ ଆଉ କେହି ବିଧ୍ୱସ୍ତ ନ ହୁଅନ୍ତି, ପ୍ରେମର ସହିତ ତାହାର ଉପାୟ ଚିନ୍ତା କରିବା- ବୁଦ୍ଧଦେବଙ୍କର ଯାହା ହୋଇଥିଲା । ଏହାହିଁ ହେଉଚ୍ଛି ସବଳ ହୃଦୟର ଦୃଷ୍ଟାନ୍ତ । ୬

ତୁମେ କୁହନା ତୁମେ ଭୀରୁ, କୁହନା ତୁମେ କାପୁରୁଷ, କୁହନା ତୁମେ ଦୁରାଶୟ । ପିତାଙ୍କ ଆଡକୁ ନଜର କର, ଆବେଗଭରେ କୁହ- "ହେ ପିତା, ମୁଁ ତୁମରି ସନ୍ତାନ; ମୋର ଆଉ ଜଡତା ନାହିଁ, ଆଉ ଦୁର୍ବଳତା ନାହିଁ, ମୁଁ ଆଉ କାପୁରୁଷ ନୁହେଁ, ମୁଁ ଆଉ ତୁମକୁ ଭୁଲି ନରକ ଆଡକୁ ଦୌଡିଯିବି ନାହିଁ, ଆଉ ତୁମର ଜ୍ୟୋତି ଆଡକୁ ପଛ କରି 'ଅନ୍ଧକାର' 'ଅନ୍ଧକାର' ବୋଲି ଚିତ୍କାର କରିବି ନାହିଁ ।" ୭

************************************************************************************

ଅନୁତାପ କର; କିନ୍ତୁ ସ୍ମରଣ ରଖ ଯେପରି ପୁନରାୟ ଅନୁତପ୍ତ ହେବାକୁ ନପଡେ । ୮

ଯେତେବେଳେ ତୁମର କୁକର୍ମ ପାଇଁ ତୁମେ ଅନୁତପ୍ତ ହେବ, ସେତେବେଳେ ପରମପିତା ତୁମକୁ କ୍ଷମା କରିବେ, ଆଉ କ୍ଷମା ପାଇଲେହିଁ ବୁଝିପାରିବ, ତୁମ ହୃଦୟରେ ପବିତ୍ର ସାନ୍ତ୍ୱନା ଆସୁଚ୍ଛି, ଆଉ ତାହା ହେଲେହିଁ ତୁମେ ବିନୀତ, ଶାନ୍ତ ଓ ଆନନ୍ଦିତ ହେବ । ୯

ଯେ ଅନୁତପ୍ତ ହୋଇ ମଧ୍ୟ ପୁନରାୟ ସେହିପ୍ରକାର ଦୁଷ୍କର୍ମରେ ରତ ହୁଏ, ବୁଝିବାକୁ ହେବ ସେ ସତ୍ୱରହିଁ ଅତ୍ୟନ୍ତ ଦୁର୍ଗତିରେ ପତିତ ହେବ । ୧୦

କେବଳ ମୁହେଁ ମୁହେଁ ଅନୁତାପ କରିବା ଅନୁତାପ ନୁହେଁ, ଆହୁରି ଅନ୍ତରରେ ଅନୁତାପ ଆସିବାର ଅନ୍ତରାୟ । ପ୍ରକୃତ ଅନୁତାପ ଆସିଲେ ତାହାର ସମସ୍ତ ଲକ୍ଷଣହିଁ ଊଣାଅଧିକେ ପ୍ରକାଶ ପାଏ । ୧୧

************************************************************************************

ଜଗତରେ ମଣିଷ ଯେତେ- ଯାହା ଦୁଃଖ ପାଏ ତାହାର ଅଧିକାଂଶ ହିଁ କାମିନୀ-କାଞ୍ଚନ ପ୍ରତି ଆସକ୍ତିରୁ ଆସେ, ସେ ଦୁଇଟା ପାଖରୁ ଯେତିକି ଦୂରେଇ ରହିବ ସେତିକି ମଙ୍ଗଳ । ୧୨

ଭଗବାନ ଶ୍ରୀଶ୍ରୀରାମକୃଷ୍ଣଦେବ ସମସ୍ତଙ୍କୁ ବିଶେଷ ଭାବରେ କହିଛନ୍ତି, କାମିନୀ-କାଞ୍ଚନ ପାଖରୁ ତଫାତ୍- ତଫାତ୍- ଖୁବ୍ ତଫାତ୍ ରୁହ । ୧୩

କାମିନୀ ଠାରୁ କାମ ବାଦ୍ ଦେଲେହିଁ ସେ ମା ହୋଇପଡନ୍ତି । ବିଷ ଅମୃତ ହୋଇଗଲା । ଆଉ ମା କେବଳ ମା- କାମିନୀ ନୁହେଁ । ୧୪

'ମା' ଶେଷରେ 'ଗୀ' ଦେଇ ଭାବିଲେହିଁ ସର୍ବନାଶ । ସାବଧାନ ! ମା'କୁ ମାଗୀ ଭାବି ମରନାହିଁ ।୧୫

ପ୍ରତ୍ୟେକଙ୍କର ମା-ହିଁ ଜଗଜ୍ଜନନୀ । ପ୍ରତ୍ୟେକ ଝିଅହିଁ ନିଜ ମା'ର ବିଭିନ୍ନ ରୂପ, ଏହିପରି ଭାବିବାକୁ ହୁଏ । ୧୬

ମାତୃଭାବ ହୃଦୟରେ ପ୍ରତିଷ୍ଠିତ ନ ହେଲେ ସ୍ତ୍ରୀ ଲୋକଙ୍କୁ ଛୁଇଁବା ଅନୁଚିତ- ଯେତେ ଦୂରେଇ ରହିପାର ସେତେ ଭଲ; ଏପରିକି ମୁଖଦର୍ଶନ ନକରିବା ଆହୁରି ଭଲ ।୧୭

ମୋର କାମ-କ୍ରୋଧାଦି ଗଲାନାହିଁ, ଗଲାନାହିଁ- ବୋଲି ଚିତ୍କାର କଲେ କେବେହେଲେ ସେଗୁଡିକ ଯାଏନାହିଁ । ଏପରି କର୍ମ, ଏପରି ଚିନ୍ତା ଅଭ୍ୟାସ କରି ନେବାକୁ ହେବ ଯହିଁରେ କାମ-କ୍ରୋଧାଦିର ଗନ୍ଧବି ନଥିବ- ମନ ଯାହାଦ୍ୱାରା ସେସବୁ ଭୁଲିଯିବ । ୧୮

ମନରେ କାମ-କ୍ରୋଧାଦିର ଭାବ ନ ଆସିଲେ କିପରି ତାହା ପ୍ରକାଶ ପାଇବ ? ଉପାୟ- ଉଚ୍ଚତର ଉଦାର ଭାବରେ ନିମଜ୍ଜିତ ରହିବା । ୧୯

ସୃଷ୍ଟିତତ୍ତ୍ୱ, ଗଣିତବିଦ୍ୟା, ରସାୟନଶାସ୍ତ୍ର ଇତ୍ୟାଦିର ଆଲୋଚନାରେ କାମ-ରିପୁର ଦମନ ହୁଏ । ୨୦

କାମିନୀ-କାଞ୍ଚନ ସମ୍ବନ୍ଧୀୟ ଯେକୌଣସି ରକମର ଆଲୋଚନାହିଁ ସେଥିପ୍ରତି ଆସକ୍ତି ଆଣି ଦେଇପାରେ । ସେ-ସବୁ ଆଲୋଚନାରୁ ଯେତେ ଦୂରେଇ ରହିପାରିବେ ସେତେ ଭଲ । ୨୧

*************************************************************************************

ସଙ୍କୋଚହିଁ ଦୁଃଖ, ଏବଂ ପ୍ରସାରଣହିଁ ସୁଖ । ଯହିଁରେ ହୃଦୟରେ ଦୁର୍ବଳତା ଆସେ, ଭୟ ଆସେ- ତହିଁରେହିଁ ଆନନ୍ଦର ଅଭାବ- ଆଉ ତାହାହିଁ ଦୁଃଖ । ୨୨

ଗ୍ରହିବାଟା ନ ପାଇବାହିଁ ଦୁଃଖ । କିଚ୍ଛି ଗ୍ରହନାହିଁ । ସବୁ ଅବସ୍ଥାରେ ରାଜି ଥାଅ, ଦୁଃଖ ତୁମର କ'ଣ କରିବ ? ୨୩

ଦୁଃଖ କାହାରି ପ୍ରକୃତିଗତ ନୁହେଁ, ତାକୁ ଇଚ୍ଛା କରିଲେହିଁ ତାକୁ ତଡି ଦିଆଯାଇପାରେ । ୨୪

ପରମପିତାଙ୍କ ନିକଟରେ ପ୍ରାର୍ଥନା କର- 'ତୁମର ଇଚ୍ଛାହିଁ ମଙ୍ଗଳ;

ମୁଁ ଜାଣେନା, କେଉଁଥିରେ ମୋର ମଙ୍ଗଳ ହେବ ।

ମୋ ଭିତରେ ତୁମର ଇଚ୍ଛାହିଁ ପୂର୍ଣ୍ଣ ହେଉ ।'

ଆଉ ସେଥିପାଇଁ ତୁମେ ରାଜି ଥାଅ- ଆନନ୍ଦରେ ରହିବ, ଦୁଃଖ ତୁମକୁ ସ୍ପର୍ଶ କରିବ ନାହିଁ । ୨୫

କାହାରି ଦୁଃଖର କାରଣ ହୁଅନା, କେହି ତୁମର ଦୁଃଖର କାରଣ ହେବେ ନାହିଁ । ୨୬

ଦୁଃଖ ବି ଏକ ରକମ ଭାବ, ସୁଖ ବି ଏକ ରକମ ଭାବ । ଅଭାବର ବା ଗ୍ରହିବାର ଭାବଟାହିଁ ଦୁଃଖ । ତୁମେ ଜଗତର ହଜାର କରି ମଧ୍ୟ ଦୁଃଖ ନଷ୍ଟ କରିପାରିବ ନାହିଁ- ଯେ ପର୍ଯ୍ୟନ୍ତ ତୁମ ହୃଦୟରୁ ସେହି ଅଭାବର ଭାବଟାକୁ କାଢି ନ ନେଇଛ । ଆଉ, ଧର୍ମହିଁ ତାହା କରିପାରେ । ୨୭

*************************************************************************************

ଯଦି ସାଧନାରେ ଉନ୍ନତି ଲାଭ କରିବାକୁ ଗୃହ, ତେବେ କପଟତା ତ୍ୟାଗ କର । ୨୮

କପଟ ବ୍ୟକ୍ତି ଅନ୍ୟ ନିକଟରୁ ସୁଖ୍ୟାତିର ଆଶାରେ ନିଜକୁ ନିଜେ ପ୍ରବଞ୍ଚନା କରେ । ଅଳ୍ପ ବିଶ୍ୱାସ ଯୋଗୁଁ ଅନ୍ୟର ପ୍ରକୃତ ଦାନରୁ ମଧ୍ୟ ପ୍ରବଞ୍ଚିତ ହୁଏ ।୨୯

ତୁମେ ଲକ୍ଷ ଗଳ୍ପ କର, କିନ୍ତୁ ପ୍ରକୃତ ଉନ୍ନତି ନହେଲେ ତୁମେ ପ୍ରକୃତ ଆନନ୍ଦ କଦାପି ଲାଭ କରିପାରିବ ନାହିଁ । ୩୦

କପଟାଶ୍ରୟୀର ମୁହଁର କଥା ସଙ୍ଗେ ଅନ୍ତରର ଭାବ ବିକଶିତ ହୁଏ ନାହିଁ, ସେଥିପାଇଁ ଆନନ୍ଦର କଥାରେ ମଧ୍ୟ ମୁହଁରେ ନିରସତାର ଚିହ୍ନ ଦୃଷ୍ଟ ହୁଏ; କାରଣ ମୁହଁ ଖୋଲିଲେ କ'ଣ ହେବ, ହୃଦୟରେ ଭାବର ସ୍ଫୁର୍ତ୍ତି ହୁଏ ନାହିଁ । ୩୧

ଅମୃତମୟ ବାରି କପଟୀ ନିକଟରେ ତିକ୍ତ ଲବଣମୟ, କୂଳକୁ ଯାଇ ମଧ୍ୟ ତା'ର ତୃଷ୍ଣା ନିବାରିତ ହୁଏ ନାହିଁ । ୩୨

ସରଳ ବ୍ୟକ୍ତି ଊର୍ଦ୍ଧ୍ୱଦୃଷ୍ଟିସଂପନ୍ନ ଗୃଧ୍ରକ ପରି । କପଟୀ ନିମ୍ନଦୃଷ୍ଟିସଂପନ୍ନ ଶାଗୁଣା ପରି । ଛୋଟ ହୁଅ, କିନ୍ତୁ ଲକ୍ଷ୍ୟ ଉଚ୍ଚ ହେଉ; ବଡ ଏବଂ ଉଚ୍ଚ ହୋଇ ନିମ୍ନଦୃଷ୍ଟିସଂପନ୍ନ ଶାଗୁଣା ପରି ହେବାରେ ଲାଭ କ'ଣ ? ୩୩

କପଟୀ ହୁଅ ନାହିଁ । ନିଜେ ଠକାମିରେ ପଡନାହିଁ କି ଅନ୍ୟକୁ ଠକାଅ ନାହିଁ । ୩୪

***************************************************************************************

ଏହା ଖୁବ୍‌ହିଁ ସତ୍ୟ କଥା ଯେ, ମନରେ ଯେତେବେଳେହିଁ ଅପରର ଦୋଷ ଦେଖିବାର ପ୍ରବୃତ୍ତି ଆସିଛି ସେତେବେଳେ ସେହି ଦୋଷ ନିଜ ଭିତରେ ଆସି ବସା ବାନ୍ଧିଛି । ତତ୍‌କ୍ଷଣାତ୍ କାଳବିଳମ୍ବ ନକରି ସେହି ପାପପ୍ରବୃତ୍ତିକୁ ଭାଙ୍ଗି ଚୁରି ଓଳେଇ ସଫା କରିଦେଲେ ଯାଇ ନିସ୍ତାର, ନଚେତ୍ ସବୁ ନଷ୍ଟ ହୋଇଯିବ । ୩୫

ତୁମର ନଜର ଯଦି ଅନ୍ୟର କେବଳ କୁ-ହିଁ ଦେଖେ, ତେବେ ତୁମେ କେବେହେଲେ କାହାରିକୁ ଭଲପାଇ ପାରିବ ନାହିଁ । ଆଉ ଯେ ସତ୍ ଦେଖିପାରେନା ସେ କଦାପି ସତ୍ ହୁଏନାହିଁ । ୩୬

ତୁମର ମନ ଯେତେ ନିର୍ମଳ ହେବ, ତୁମର ଚକ୍ଷୁ ସେତେ ନିର୍ମଳ ହେବ, ଆଉ ଜଗତଟା ତୁମ ନିକଟରେ ନିର୍ମଳ ହୋଇ ଭାସି ଉଠିବ । ୩୬

ତୁମେ ଯାହାହିଁ ଦେଖ ନା କାହିଁକି, ଅନ୍ତରର ସହିତ ସର୍ବାଗ୍ରେ ତା'ର ଭଲଟିକକ ଦେଖିବାକୁ ଚେଷ୍ଟାକର, ଆଉ ଏହି ଅଭ୍ୟାସ ତୁମେ ମଜ୍ଜାଗତ କରିପକାଅ । ୩୭

ତୁମର ଭାଷା ଯଦି କୁତ୍ସା-କଳଙ୍କଜଡିତ ହୋଇଥାଏ, ଅପରର ସୁଖ୍ୟାତି କରି ନ ପାରେ, ତେବେ ଯେପରି କାହାରି ପ୍ରତି କୌଣସି ମତାମତ ପ୍ରକାଶ ନ କରେ । ଆଉ ମନେ-ମନେ ତୁମେ ନିଜ ସ୍ୱଭାବକୁ ଘୃଣା କରିବାକୁ ଚେଷ୍ଟା କର, ଏବଂ ଭବିଷ୍ୟତରେ କୁତ୍ସା-ନରକ ତ୍ୟାଗ କରିବାକୁ ଦୃଢ-ପ୍ରତିଜ୍ଞ ହୁଅ । ୩୮

ପରନିନ୍ଦା କରିବା ମାନେହିଁ ପରର ଦୋଷ କୁଢାଇନେଇ ନିଜେ କଳଙ୍କିତ ହେବା; ଆଉ ପରର ସୁଖ୍ୟାତି କରିବାର ଅଭ୍ୟାସ ଦ୍ୱାରା ନିଜର ସ୍ୱଭାବ ଅଜ୍ଞାତସାରରେ ଭଲ ହୋଇପଡେ । ୩୯

ତାହାବୋଲି କୌଣସି ସ୍ୱାର୍ଥବୁଦ୍ଧି ନେଇ ଅନ୍ୟର ସୁଖ୍ୟାତି କରିବା ଠିକ୍ ନୁହେଁ । ସେ ତ ଖୋସାମତ । ସେ-କ୍ଷେତ୍ରରେ ମନ-ମୁହଁ ପ୍ରାୟ୍ ଏକ ରହେନାହିଁ । ତାହା କିନ୍ତୁ ବଡ ଖରାପ, ଆଉ ତହିଁରେ ନିଜର ସ୍ୱାଧୀନ ମତପ୍ରକାଶ କରିବାର ଶକ୍ତି ହଜିଯାଏ । ୪୦

************************************************************************************

ଯାହା-ଉପରେ ଯାହାକିଛି ସବୁ ତିଷ୍ଠି ରହିଚ୍ଛି ତାହାହିଁ ଧର୍ମ, ଆଉ ସେ-ହିଁ ପରମପୁରୁଷ । ୪୧

ଧର୍ମ କେବେହେଲେ ବହୁ ହୁଏନା, ଧର୍ମ ଏକ, ଆଉ ତା'ର କୌଣସି ପ୍ରକାର ନାହିଁ । ୪୨

ମତ ବହୁତ ହୋଇପାରେ, ଏପରିକି ଯେତେ ମଣିଷ ସେତେ ମତ ହୋଇପାରେ, କିନ୍ତୁ ତାହାବୋଲି ଧର୍ମ ବହୁତ ହୋଇପାରେ ନାହିଁ । ୪୩

ହିନ୍ଦୁଧର୍ମ, ମୁସଲମାନଧର୍ମ, ଖ୍ରୀଷ୍ଟିୟାନଧର୍ମ, ବୌଦ୍ଧଧର୍ମ ଇତ୍ୟାଦି କଥା ମୋ ମତରେ ଭୁଲ, ବରଂ ସେ ସବୁଗୁଡିକ ମତ । ୪୪

କୌଣସି ମତ ସହିତ କୌଣସି ମତର ପ୍ରକୃତ-ପକ୍ଷରେ କୌଣସି ବିରୋଧ ନାହିଁ, ଭାବର ବିଭିନ୍ନତା, ପ୍ରକାରଭେଦ- ଗୋଟିଏକୁ ନାନା ପ୍ରକାରରେ ଏକରୂପେ ଅନୁଭବ !୪୫

ସବୁ ମତହିଁ ସାଧନା ବିସ୍ତାର ପାଇଁ, ତେବେ ତାହା ନାନାପ୍ରକାରେ ହୋଇପାରେ; ଆଉ ଯେତିକି ବିସ୍ତାର ହେଲେ ଯାହା ହୁଏ ତାହାହିଁ ଅନୁଭୂତି, ଜ୍ଞାନ । ତେଣୁ ଧର୍ମ ଅନୁଭୂତିର ଉପରେ । ୪୬

************************************************************************************

ଯଦି ଭଲ ଗୃହ ତେବେ ଜ୍ଞାନଭିମାନ ଛାଡ, ସମସ୍ତଙ୍କ କଥା ଶୁଣ; ଆଉ, ଯାହା ତୁମ ହୃଦୟ୍ର ବିସ୍ତାରରେ ସାହାଯ୍ୟ କରେ, ତାହାହିଁ କର । ୪୭

ଜ୍ଞାନଭିମାନ ଜ୍ଞାନର ଯେତେ ଅନ୍ତରାୟ୍ ଆଉ କୌଣସି ରିପୁ ସେତେ ନୁହେଁ । ୪୮

ଯଦି ଶିକ୍ଷା ଦେବାକୁ ଗୃହ ତେବେ କେବେହେଲେ ଶିକ୍ଷକ ହେବାକୁ ଗୃହ ନାହିଁ । ମୁଁ ଶିକ୍ଷକ, ଏହି ଅହଙ୍କାର ହିଁ କାହାରିକୁ ଶିଖିବାକୁ ଦିଏନାହିଁ । ୪୯

ଅହଂକୁ ଯେତିକି ଦୂରରେ ରଖିବ ତୁମର ଜ୍ଞାନର ବା ଦର୍ଶନର ସୀମା ସେତିକି ବିସ୍ତାର ହେବ । ୫୦

ଅହଂତା ଯେତେବେଳେ ମିଳାଇଯାଏ ଜୀବ ସେତେବେଳେ ହିଁ ସର୍ବଗୁଣସଂପନ୍ନ-ନିର୍ଗୁଣ ହୁଏ । ୫୧

************************************************************************************

ଯଦି ପରୀକ୍ଷକ ସାଜି ଅହଙ୍କାର ନେଇ ସଦ୍‌ଗୁରୁ କିମ୍ବା ପ୍ରେମୀ ସାଧୁଗୁରୁଙ୍କ ପରୀକ୍ଷା କରିବାକୁ ଯାଅ ତେବେ ତୁମେ ତାଙ୍କଠି କେବଳ ତୁମକୁହିଁ ଦେଖିବ, ଠକି ଆସିବ । ୫୨

ସଦ୍‌ଗୁରୁଙ୍କ ପରୀକ୍ଷା କରିବାକୁ ହେଲେ ତାଙ୍କ ନିକଟକୁ ସଂକୀର୍ଣ୍ଣ ସଂସ୍କାର ବିହୀନ ହୋଇ, ଭଲ-ପାଇବାର ହୃଦୟ୍ ନେଇ, ଦୀନ ଏବଂ ଯେତେଦୂର ସମ୍ଭବ ନିରହଙ୍କାର ହୋଇ ଯାଇ ପାରିଲେ ତାଙ୍କ ଦୟ୍ାରେ ସନ୍ତୁଷ୍ଟ ହୋଇପାରିବ । ୫୩

ତାଙ୍କୁ ଅହଂ ରୂପକ କଷ୍ଟିପଥର ଦ୍ୱାରା କଷାଯାଏ ନାହିଁ, କିନ୍ତୁ ସେ ପ୍ରକୃତ ଦୀନତାରୂପକ ମେଣ୍ଢା ଶିଙ୍ଘରେ ଖଣ୍ଡବିଖଣ୍ଡ ହୁଅନ୍ତି । ୫୪

ହୀରା ଯେପରି କୋଇଲା ପ୍ରଭୃତି ଆବର୍ଜନାରେ ଥାଏ, ଉତ୍ତମରୂପେ ପରିଷ୍କାର ନକଲେ ତାହାର ଜ୍ୟୋତି ବାହାରେ ନାହିଁ, ସେ ମଧ୍ୟ ସେହିପରି ସଂସାରରେ ଅତି ସାଧାରଣ ଜୀବ ପରି ରହିଥାନ୍ତି, କେବଳ ପ୍ରେମର ପ୍ରକ୍ଷାଳନରେହିଁ ତାଙ୍କ ଦିପ୍ତୀରେ ଜଗତ ଉଦ୍ଭାସିତ ହୁଏ । ପ୍ରେମୀହିଁ ତାଙ୍କୁ ଧରିପାରେ । ପ୍ରେମୀର ସଙ୍ଗ କର ସତ୍‌ସଙ୍ଗ କର, ସେ ଆପଣାଛାଏଁ ପ୍ରକଟ ହେବେ । ୫୫

ଅହଙ୍କାରୀକୁ ଅହଙ୍କାରୀ ପରୀକ୍ଷା କରିପାରେ । ଗଳିତ-ଅହଂକୁ କିପରି ସେ ଜାଣିପାରିବ ? ତା'ନିକଟରେ ଗୋଟାଏ କିମ୍ଭୁତ-କିମାକାର- ଯେପରି ଗଜମୂର୍ଖ ନିକଟରେ ମହାପଣ୍ଡିତ । ୫୬

*********************************************************************************

ସତ୍ୟଦର୍ଶୀର ଆଶ୍ରୟ ନେଇ ସ୍ୱାଧୀନ ଭାବରେ ଚିନ୍ତା କର, ଏବଂ ବିନୟର ସହିତ ସ୍ୱାଧୀନ ମତ ପ୍ରକାଶ କର । ବହି ପଢ଼ି ବହି ହୋଇଯାଅ ନାହିଁ, ତା'ର essence (ସାର)- କୁ ମଜ୍ଜାଗତ କରିବାକୁ ଚେଷ୍ଟାକର । Pull the husk to draw the seed (ତଷୁକୁ ପକାଇ ଶଷ୍ୟଟା ନେବାକୁ ହୁଏ). ୫୭

ଉପରୁ ଉପରୁ ଦେଖି କିଚ୍ଛି ଛାଡ ନାହିଁ ବା କୌଣସି ମତ ପ୍ରକାଶ କରନାହିଁ । କୌଣସି କିଚ୍ଛିର ଶେଷ ନ ଦେଖିଲେ ତାହା ସମ୍ବନ୍ଧରେ ଜ୍ଞାନ ହୁଏନାହିଁ, ଆଉ ନ ଜାଣିଲେ ତୁମେ ତା' ବିଷୟରେ କି ମତ ପ୍ରକାଶ କରିବ ? ୫୮

ଯାହା କିଚ୍ଛି କରନା କାହିଁକି, ତା'ଭିତରେ ସତ୍ୟ ଦେଖିବାକୁ ଚେଷ୍ଟାକର । ସତ୍ୟ ଦେଖିବା ମାନେହିଁ ତା'କୁ ଆଦ୍ୟ-ପ୍ରାନ୍ତ ଜାଣିବା, ଆଉ ତାହାହିଁ ଜ୍ଞାନ । ୫୯

ଯାହା ତୁମେ ଜାଣନାହିଁ, ଏପରି ବିଷୟରେ ଲୋକଙ୍କୁ ଉପଦେଶ ଦେବାକୁ ଯାଅନାହିଁ । ୬୦

*********************************************************************************

ନିଜର ଦୋଷ ଜାଣି ସୁଦ୍ଧା ଯଦି ତୁମେ ତାହା ତ୍ୟାଗ କରି ନ ପାର, ତେବେ କୌଣସିମତେ ତାହାର ସମର୍ଥନ କରି ଅନ୍ୟର ସର୍ବନାଶ କରନାହିଁ । ୬୧

ତୁମେ ଯଦି ସତ୍ ହୁଅ, ତୁମର ଦେଖା-ଦେଖି ହଜାର-ହଜାର ଲୋକ ସତ୍ ହୋଇପଡିବେ । ଆଉ, ଯଦି ଅସତ୍ ହୁଅ, ତୁମର ଦୁର୍ଦ୍ଦଶା ପାଇଁ ସମବେଦନା ପ୍ରକାଶ କରିବାକୁ କେହି ରହିବେ ନାହିଁ; କାରଣ, ତୁମେ ଅସତ୍ ହୋଇ ତୁମର ଚତୁର୍ଦ୍ଦିଗକୁ ଅସତ୍ କରି ପକାଇଛ । ୬୨

ତୁମେ ଠିକ୍-ଠିକ୍ ଜାଣ ଯେ, ତୁମେ ତୁମର, ତୁମ ନିଜ ପରିବାରର, ଦଶର ଏବଂ ଦେଶର ବର୍ତ୍ତମାନ ଓ ଭବିଷ୍ୟତ ପାଇଁ ଦାୟୀ । ୬୩

ନାମ-ଯଶର ଆଶାରେ କୌଣସି କାର୍ଯ୍ୟ କରିବାକୁ ଯିବା ଠିକ୍ ନୁହେଁ । କିନ୍ତୁ କୌଣସି କାର୍ଯ୍ୟ ନିଃସ୍ୱାର୍ଥ ଭାବରେ କରିବାକୁ ଗଲେହିଁ କାର୍ଯ୍ୟର ଅନୁରୂପ ନାମ-ଯଶ ତୁମର ସେବା କରିବହିଁ କରିବ । ୬୪

ନିଜପାଇଁ ଯାହା କରାଯାଏ ତାହାହିଁ ସକାମ, ଆଉ ଅନ୍ୟପାଇଁ ଯାହା କରାଯାଏ ତାହାହିଁ ନିଷ୍କାମ । କାହାରି ପାଇଁ କିଚ୍ଛି ନ ଗ୍ରହିବାକୁ ଯେ ନିଷ୍କାମ କହନ୍ତି କେବଳ ତାହା ନୁହେଁ । ୬୫

ଦେଇଦିଅ, ନିଜପାଇଁ କିଛି ଗୃହ ନାହିଁ, ଦେଖିବ, ସବୁ ତୁମର ହୋଇଯାଉଛି । ୬୬

*********************************************************************************

ତୁମେ ଅନ୍ୟ ନିକଟରୁ ଯେପରି ପାଇବାକୁ ଇଚ୍ଛା କର, ଅପରକୁ ମଧ୍ୟ ସେହିପରି ଦେବାକୁ ଚେଷ୍ଟା କର- ଏପରି ବୁଝି ଚଳି ପାରିଲେ ହିଁ ଯଥେଷ୍ଟ- ଆପେ-ଆପେ ସମସ୍ତେ ତୁମକୁ ପସନ୍ଦ କରିବେ, ଭଲ ପାଇବେ । ୬୭

ନିଜେ ଠିକ୍ ରହି ସମସ୍ତଙ୍କୁ ସତ୍ ଭାବରେ ଖୁସି କରିବାକୁ ଚେଷ୍ଟା କର, ଦେଖିବ ସମସ୍ତେ ତୁମକୁ ଖୁସି କରିବାକୁ ଚେଷ୍ଟା କରୁଛନ୍ତି । ସାବଧାନ୍ ନିଜତ୍ୱ ହରାଇ କାହାରିକୁ ଖୁସି କରିବାକୁ ଯାଅନାହିଁ, ତା'ହେଲେ ତୁମର ଦୁର୍ଗତିର ସୀମା ରହିବ ନାହିଁ । ୬୮

*********************************************************************************

କାର୍ଯ୍ୟ କରିଯାଅ କିନ୍ତୁ ଆବଦ୍ଧ ହୁଅନାହିଁ । ଯଦି ବିଷୟର ପରିବର୍ତ୍ତନରେ ତୁମର ହୃଦୟରେ ପରିବର୍ତ୍ତନ ଆସୁଛି ବୋଲି ବୁଝିପାର, ଆଉ ସେହି ପରିବର୍ତ୍ତନ ତୁମର ବାଞ୍ଛନୀୟ ନୁହେଁ, ତେବେ ଠିକ୍ ଜାଣିଥାଅ, ତୁମେ ଆବଦ୍ଧ ହୋଇଛ । ୬୯

କୌଣସି ପ୍ରକାର ସଂସ୍କାରରେ ଆବଦ୍ଧ ରୁହନାହିଁ, ଏକମାତ୍ର ପରମପୁରୁଷଙ୍କର ସଂସ୍କାର ଛଡ଼ା ଆଉ ଯାହାକିଛି ସବୁହିଁ ବନ୍ଧନ । ୭୦

ତୁମର ଦର୍ଶନର-ଜ୍ଞାନର ପରିସର ଯେତେଟିକେ, ଅଦୃଷ୍ଟ ଠିକ୍ ତାହାରି ଆଗକୁ; ଦେଖିପାରୁ ନାହଁ, ଜାଣିପାରୁ ନାହଁ, ତେଣୁ ଅଦୃଷ୍ଟ । ୭୧

ତୁମର ଶଇତାନ ଅହଙ୍କାରୀ ଅହମ୍ମକ 'ମୁଁ'- ଟାକୁ ବାହାର କରିଦିଅ; ପରମପିତାଙ୍କ ଇଚ୍ଛାରେ ତୁମେ ଚଳ, ଅଦୃଷ୍ଟ କିଛି କରିପାରିବ ନାହିଁ । ପରମପିତାଙ୍କ ଇଚ୍ଛାହିଁ ଅଦୃଷ୍ଟ । ୭୧

ତୁମର ସବୁ ଅବସ୍ଥା ଭିତରେ ତାଙ୍କର ମଙ୍ଗଳ-ଇଚ୍ଛାକୁ ବୁଝିବାକୁ ଚେଷ୍ଟା କର, ଦେଖିବ କାତର ହେବନାହିଁ, ବରଂ ହୃଦୟରେ ସବଳତା ଆସିବ; ଦୁଃଖରେ ମଧ୍ୟ ଆନନ୍ଦ ପାଇବ । ୭୨

କାର୍ଯ୍ୟ କରିଯାଅ, ଅଦୃଷ୍ଟ ଭାବି ଭାଙ୍ଗି ପଡନାହିଁ, ଅଳସୁଆ ହୁଅନାହିଁ, ଯେପରି କାର୍ଯ୍ୟ କରିବ ତୁମର ଅଦୃଷ୍ଟ ସେହିପରି ହୋଇ ଦୃଷ୍ଟ ହେବେ । ସତ୍‌କର୍ମୀର କଦାପି ଅକଲ୍ୟାଣ ହୁଏନାହିଁ । ଦିନକ ଆଗରୁ ବା ପରେ । ୭୩

ପରମପିତାଙ୍କ ଆଡକୁ ଅନାଇ କାର୍ଯ୍ୟ କରିଯାଅ । ତାଙ୍କର ଇଚ୍ଛାହିଁ ଅଦୃଷ୍ଟ; ତା'ଛଡା ଆଉ ଗୋଟାଏ ଅଦୃଷ୍ଟ ଫଦୃଷ୍ଟ ବନାଇ ବେକବ୍ ହୋଇ ବସି ରୁହନାହିଁ । ଅନେକ ଲୋକ ଅଦୃଷ୍ଟରେ ନାହିଁ ବୋଲି ମଙ୍ଗଛାଡି ଦେଇ ବସିଥାନ୍ତି, ଅଥଚ ନିର୍ଭରତା ବି ନାହିଁ, ଶେଷରେ ସାରା ଜୀବନ ଦୁର୍ଦ୍ଦଶାରେ କଟାନ୍ତି, ସେ-ସବୁ ଅହମ୍ମକୀ । ୭୪

ତୁମର ତୁମେ ଗଲେହିଁ ଅଦୃଷ୍ଟ ଶେଷହେଲା, ଦର୍ଶନ ବି ନାହିଁ, ଅଦୃଷ୍ଟ ବି ନାହିଁ । ୭୫

*********************************************************************************

ଆଗେଇ ଯାଅ, କିନ୍ତୁ ମାପି ଦେଖିବାକୁ ଯାଅନାହିଁ କେତେଦୂର ଆଗେଇଛ; ତା'ହେଲେ ପୁଣି ପଛେଇ ଯିବ । ୭୬

ଅନୁଭବ କର କିନ୍ତୁ ଅଭିଭୂତ ହୋଇ ପଡନାହିଁ, ତା'ହେଲେ ଗୁଲିପାରିବ ନାହିଁ । ଯଦି ଅଭିଭୂତ ହେବାକୁ ହୁଏ ତେବେ ଈଶ୍ୱର ପ୍ରେମରେ । ୭୭

ଯେତେ ପାର ସେବା କର, କିନ୍ତୁ ସାବଧାନ୍, ସେବା ନେବାକୁ ଯେପରି ଇଚ୍ଛା ନ ହୁଏ । ୭୮

ଅନୁରୋଧ କର, କିନ୍ତୁ ହୁକୁମ୍ କରିବାକୁ ଯାଅନାହିଁ । ୭୯

କେବେହେଲେ ନିନ୍ଦା କରନାହିଁ, କିନ୍ତୁ ଅସତ୍ୟର ପ୍ରଶ୍ରୟ ଦିଅନାହିଁ । ୮୦

ଧୀର ହୁଅ, ତା'ବୋଲି ଅଳସୁଆ, ଦୀର୍ଘସୂତ୍ରୀ ହୁଅନାହିଁ । ୮୧

କ୍ଷିପ୍ର ହୁଅ. କିନ୍ତୁ ଅଧୀର ହୋଇ ବିରକ୍ତିକୁ ଡାକିଆଣି ସବୁ ନଷ୍ଟ କରିପକାଅ ନାହିଁ । ୮୨

ବୀର ହୁଅ, କିନ୍ତୁ ହିଂସ୍ରକ ହୋଇ ବାଘ ଭାଲୁ ସାଜି ବସନାହିଁ । ୮୩

ସ୍ଥିରପ୍ରତିଜ୍ଞ ହୁଅ, କିନ୍ତୁ ଗୁଆଁର ହୁଅନାହିଁ । ୮୪

ତୁମେ ନିଜେ ସହ୍ୟ କର, କିନ୍ତୁ ଯେ ପାରେନା ତାକୁ ସାହାଯ୍ୟ କର, ଘୃଣା କରନାହିଁ, ସହାନୁଭୂତି ଦେଖାଅ, ସାହସ ଦିଅ । ୮୫

ନିଜକୁ ନିଜେ ପ୍ରଶଂସା ଦେବାକୁ କୃପଣ ସାଜ, କିନ୍ତୁ ଅପରର ବେଳକୁ ଦାତା ହୁଅ । ୮୬

ଯାହା ଉପରେ କ୍ରୁଦ୍ଧ ହୋଇଛ, ଆଗ ତା'କୁ ଆଲିଙ୍ଗନ କର, ନିଜ ଘରେ ଭୋଜନ ପାଇଁ ନିମନ୍ତ୍ରଣ କର, ଡାଲା ପଠାଅ, ଏବଂ ହୃଦୟ ଖୋଲି ବାକ୍ୟାଳାପ ନ କଲା ପର୍ଯ୍ୟନ୍ତ ଅନୁତାପର ସହିତ ତାହାର ମଙ୍ଗଳ ପାଇଁ ପରମପିତାଙ୍କ ନିକଟରେ ପ୍ରାର୍ଥନା କର; କାରଣ, ବିଦ୍ୱେଷ ଆସିଲେହିଁ କ୍ରମେ ତୁମେ ସଂକୀର୍ଣ୍ଣ ହୋଇ ପଡିବ, ଆଉ ସଂକୀର୍ଣ୍ଣତାହିଁ ପାପ । ୮୭

ଯଦି କେହି ତୁମର କେବେହେଲେ ଅନ୍ୟାୟ କରେ, ଆଉ ଏକାନ୍ତହିଁ ତାର ପ୍ରତିଶୋଧ ନେବାକୁ ହୁଏ, ତେବେ ତୁମେ ତାହା ସଙ୍ଗରେ ଏପରି ବ୍ୟବହାର କର ଯାହାଦ୍ୱାରା ସେ ଅନୁତପ୍ତ ହୁଏ; ଏହାଠାରୁ ବଳି ପ୍ରତିଶୋଧ ଆଉ ନାହିଁ- ଅନୁତାପ ତୁଷାନଳ । ସେଥିରେ ଉଭୟଙ୍କରହିଁ ମଙ୍ଗଳ । ୮୮

ବନ୍ଧୁତ୍ୱ ଖାରଜ କରନାହିଁ, ତା'ହେଲେ ଶାସ୍ତିରେ ସମବେଦନା ଓ ସାନ୍ତ୍ୱନା ପାଇବ ନାହିଁ । ୮୯

ତୁମ ବନ୍ଧୁ ଯଦି ଅସତ୍ ବି ହୁଏ, ତାକୁ ତ୍ୟାଗ କରନାହିଁ, ବରଂ ପ୍ରୟୋଜନ ହେଲେ ତା'ର ସଙ୍ଗ ବନ୍ଦ କର । କିନ୍ତୁ ଅନ୍ତରରେ ଶ୍ରଦ୍ଧା ରଖି ବିପଦ-ଆପଦରେ କାୟମନୋବାକ୍ୟରେ ସାହାଯ୍ୟ କର, ଆଉ ଅନୁତପ୍ତ ହେଲେ ଆଲିଙ୍ଗନ କର । ୯୦

ତୁମ ବନ୍ଧୁ ଯଦି କୁପଥରେ ଯାଏ, ଆଉ ତୁମେ ଯଦି ତାକୁ ଫେରାଇବାକୁ ଚେଷ୍ଟା ନ କର ବା ତ୍ୟାଗ କର, ତା'ର ଶାସ୍ତି ତୁମକୁ ବି ତ୍ୟାଗ କରିବ ନାହିଁ । ୯୧

ବନ୍ଧୁର କୁତ୍ସାରଟନା କରନାହିଁ ବା କୌଣସି ପ୍ରକାରେ ଅନ୍ୟ ପାଖରେ ନିନ୍ଦା କରନାହିଁ; କିନ୍ତୁ ତା'ବୋଲି ତା' ନିକଟରେ ତାର କୌଣସି ମନ୍ଦର ପ୍ରଶ୍ରୟ ଦିଅନାହିଁ । ୯୨

ବନ୍ଧୁ ନିକଟରେ ଉଦ୍ଧତ ହୁଅନାହିଁ, କିନ୍ତୁ ପ୍ରେମର ସହିତ ଅଭିମାନରେ ତା'କୁ ଶାସନ କର । ୯୩

ବନ୍ଧୁ ନିକଟରୁ କିଛି ପ୍ରତ୍ୟାଶା ରଖନାହିଁ, କିନ୍ତୁ ଯାହା ପାଅ, ପ୍ରେମର ସହିତ ଗ୍ରହଣ କର । କିଛି ଦେଲେ ପାଇବାର ଆଶା ରଖନାହିଁ, କିନ୍ତୁ କିଛି ପାଇଲେ ଦେବାକୁ ଚେଷ୍ଟାକର । ୯୪

**************************************************************************************

ଯେତେଦିନ ଯାଏ ତୁମର ଶରୀର ଓ ମନରେ ବ୍ୟଥା ଲାଗେ, ସେତେଦିନ ଯାଏ ତୁମେ ଗୋଟିଏ ପିପୀଲିକାର ମଧ୍ୟ ବ୍ୟଥା ନିରାକରଣ ଦିଗରେ ଚେଷ୍ଟା ରଖ, ଆଉ ତା' ଯଦି ନ କର ତେବେ ତୁମଠାରୁ ହୀନ ଆଉ କିଏ? ୯୫

ତୁମ ଗାଲରେ ଚାପୁଡ଼ା ମାରିଲେ ଯଦି କହିପାର କିଏ କାହାକୁ ମାରୁଛି ତେବେ ଅନ୍ୟର ବେଳକୁ ମଧ୍ୟ କୁହ, ଭଲ କଥା । ଖବରଦାର, ନିଜେ ଯଦି ସେପରି ଭାବି ନ ପାର ତେବେ ଅନ୍ୟର ବେଳକୁ କହିବାକୁ ଯାଅନାହିଁ । ୯୬

ଯଦି ନିଜର କଷ୍ଟବେଳକୁ ସଂସାରୀ ସାଜ, ଅନ୍ୟ ବେଳକୁ ବ୍ରହ୍ମଜ୍ଞାନୀ ସାଜ ନାହିଁ । ୯୭

ବରଂ ନିଜ ଦୁଃଖ ବେଳକୁ ବ୍ରହ୍ମଜ୍ଞାନୀ ସାଜ, ଆଉ ଅନ୍ୟ ବେଳକୁ ସଂସାରୀ ସାଜ, ଏପରି ଭେଲ ମଧ୍ୟ ଭଲ । ୯୮

ଯଦି ମଣିଷ ହୁଅ ତ ନିଜ ଦୁଃଖରେ ହସ, ଆଉ ପର ଦୁଃଖରେ କାନ୍ଦ । ୯୯

ନିଜର ମୃତ୍ୟୁ ଯଦି ଅପସନ୍ଦ କର, ତେବେ କେବେହେଲେ କାହାକୁ 'ମର' ବୋଲି କୁହନାହିଁ । ୧୦୦

**************************************************************************************

ହସ, କିନ୍ତୁ ବିଦ୍ରୁପରେ ନୁହେଁ । ୧୦୧

କାନ୍ଦ, କିନ୍ତୁ ଆସକ୍ତିରେ ନୁହେଁ, ଭଲପାଇବାରେ, ପ୍ରେମରେ । ୧୦୨

କୁହ, କିନ୍ତୁ ଆତ୍ମପ୍ରଶଂସାରେ ବା ଖ୍ୟାତି ବିସ୍ତାର ପାଇଁ ନୁହେଁ । ୧୦୩

ତୁମର ଚରିତ୍ରର କୌଣସି ଉଦାହରଣରେ ଯଦି କାହାରି ମଙ୍ଗଳ ହୁଏ, ତେବେ ତା' ନିକଟରେ ତାହା ଗୋପନ ରଖନାହିଁ । ୧୦୪

ତୁମର ସତ୍‌ସ୍ୱଭାବ କର୍ମରେ ଫୁଟି ଉଠୁ, ନିଜ ଭାଷାରେ ଯେପରି ବ୍ୟକ୍ତ ନହୁଏ, ନଜର ରଖ ।୧୦୫

ସତ୍-ରେ ତୁମର ଆସକ୍ତି ସଂଲଗ୍ନ କର, ଅଜ୍ଞାତସାରରେ ସତ୍ ହେବ । ତୁମେ ଆପଣା ଭାବରେ ସତ୍‌ଚିନ୍ତାରେ ନିମଗ୍ନ ହୁଅ, ତୁମ ଅନୁଯାୟୀ ଭାବ ଆପଣାଛାଏଁ ଫୁଟି ଉଠିବ । ୧୦୬

ଅସତ୍ ଚିନ୍ତା ଯେପରି ଗ୍ରହଣୀ, ବାକ୍ୟ, ଆଚରଣ, ବ୍ୟବହାର ଇତ୍ୟାଦିରେ ଫୁଟିଉଠେ, ସତ୍ ଚିନ୍ତା ମଧ୍ୟ ସେହିପରି ଉକ୍ତ ରୂପେ ଫୁଟି ଉଠିଥାଏ । ୧୦୭

***********************************************************************************

ସ୍ପଷ୍ଟବାଦୀ ହୁଅ, କିନ୍ତୁ ମିଷ୍ଟଭାଷୀ ହୁଅ । ୧୦୮

କହିବା ଆଗରୁ ବିବେଚନା କର, କିନ୍ତୁ କହି ବିମୁଖ ହୁଅନାହିଁ । ୧୦୯

ଯଦି ଭୁଲ୍ କହିଥାଅ, ସାବଧାନ ହୁଅ, ଭୁଲ୍ କରନାହିଁ । ୧୧୦

ସତ୍ୟ କୁହ, କିନ୍ତୁ ସଂହାର ଆଣନାହିଁ । ୧୧୧

ସତ୍ କଥା କହିବା ଭଲ, କିନ୍ତୁ ଭାବିବା, ଅନୁଭବ କରିବା ଆହୁରି ଭଲ । ୧୧୨

ଅସତ୍ କଥା କହିବା ଅପେକ୍ଷା ସତ୍ କଥା କହିବା ଭଲ ନିଶ୍ଚୟ, କିନ୍ତୁ କହିବା ସାଙ୍ଗରେ କାମ କରିବା ଓ ଅନୁଭବ ନଥିଲେ କ'ଣ ହେଲା- ବେହେଲା, ବୀଣା ଯେପରି ବାଦକାନୁଗ୍ରହରୁ ଭଲ ବାଜେ କିନ୍ତୁ ସେମାନେ ନିଜେ କିଛି ଅନୁଭବ କରିପାରନ୍ତି ନାହିଁ । ୧୧୩

ଯେ ଅନୁଭୂତିର ଖୁବ୍ ଗଳ୍ପ କରେ ଅଥଚ ତାର ଲକ୍ଷଣ ପ୍ରକାଶ ପାଏନାହିଁ, ତାର ଗଳ୍ପଗୁଡିକ କଳ୍ପନା ମାତ୍ର ବା ଆଡମ୍ବର । ୧୧୪

ଯେତେ ଡୁବିବ ସେତେ ବେମାଲୁମ ହେବ । ୧୧୫

ଯେମିତି ଡାଳିମ୍ବ ପାଚିଲେହିଁ ଫାଟିଯାଏ, ତୁମ ଅନ୍ତରରେ ସତ୍‌ଭାବ ପାଚିଲେ ଆପେ ଫାଟିଯିବ- ତୁମ ମୁହଁରେ ତାହା ପ୍ରକାଶ କରିବାକୁ ହେବନାହିଁ । ୧୧୬

***********************************************************************************

ଯେଉଁ ଖିଆଲ ବିବେକର ଅନୁଚର, ତାହାରି ଅନୁସରଣ କର, ମଙ୍ଗଳର ଅଧିକାରୀ ହେବ । ୧୧୭

ବିସ୍ତାରରେ ଅସ୍ତିତ୍ୱ ହରାଅ କିନ୍ତୁ ଲିଭିଯାଅ ନାହିଁ । ବିସ୍ତାରହିଁ ଜୀବନ ବିସ୍ତାରହିଁ ପ୍ରେମ । ୧୧୮

ଯେଉଁ କର୍ମ ମନର ପ୍ରସାରଣ ଆଣିଦିଏ, ତାହାହିଁ ସୁକର୍ମ, ଆଉ ଯେଉଁଥିରେ ସଂସ୍କାର, ଜିଦ୍ ଇତ୍ୟାଦି ଆସେ, ସାର କଥା ଯେଉଁଥିରେ ମନ ସଂକୀର୍ଣ୍ଣ ହୁଏ ତାହାହିଁ କୁକର୍ମ । ୧୧୯

ଯେଉଁ କର୍ମ ମଣିଷ ପାଖରେ କହିଲେ ମୁହଁରେ କାଳିମା ପଡେ, ତାହା କରିବାକୁ ଯାଅନାହିଁ । ଘୃଣା-ଲଜ୍ଜା-ଭୟରେ ଗୋପନୀୟତା ଯେଉଁଠି ସେହିଠାରେହିଁ ଦୁର୍ବଳତା, ସେହିଠାରେହିଁ ପାପ । ୧୨୦

ଯେଉଁ ସାଧନା କରିଲେ ହୃଦୟରେ ପ୍ରେମ ଆସେ, ତାହାହିଁ କର, ଆଉ ଯେଉଁଥିରେ କ୍ରୁରତା, କଠୋରତା, ହିଂସା ଆସେ ତାହା ଆପାତତଃ ଲାଭଜନକ ହେଲେ ମଧ୍ୟ ତା' ପାଖକୁ ଯାଅନାହିଁ । ୧୨୧

ତୁମେ ଯଦି ଏପରି ଶକ୍ତି ଲାଭ କରିଥାଅ ଯାହାଦ୍ୱାରା ଚନ୍ଦ୍ର-ସୂର୍ଯ୍ୟ କକ୍ଷଚ୍ୟୁତ କରିପାର, ପୃଥିବୀ ଭାଙ୍ଗି ଟୁକୁରା-ଟୁକୁରା କରିପାର ବା ସମସ୍ତଙ୍କୁ ଐଶ୍ୱର୍ଯ୍ୟଶାଳୀ କରି ଦେଇପାର, କିନ୍ତୁ ଯଦି ହୃଦୟରେ ପ୍ରେମ ନଥାଏ, ତେବେ ତୁମର କିଛି ବି ହୋଇନାହିଁ । ୧୨୨

***********************************************************************************

ଗୋଟାଏ ଗ୍ରହିବାକୁ ଯାଇ ଦଶଟା ଗ୍ରହି ବସନାହିଁ, ଗୋଟିକର ଯେପରି ଚରମ ହୁଏ ତାହାହିଁ କର, ସବୁଗୁଡ଼ିକହିଁ ପାଇବ । ୧୨୩

ଜୀବନକୁ ଯେଉଁ ଭାବରେ ବଳି ଦେବ ନିଶ୍ଚୟ ସେହିପରି ଜୀବନ ଲାଭ କରିବ । ୧୨୪

ଯେ-କେହି ପ୍ରେମ ପାଇଁ ଜୀବନ ଦାନ କରେ, ସେ ପ୍ରେମର ଜୀବନ ଲାଭ କରେ । ୧୨୫

ଉଦ୍ଦେଶ୍ୟରେ ଅନୁପ୍ରାଣିତ ହୁଅ, ଆଉ ପ୍ରଶାନ୍ତ ଚିତ୍ତରେ ସମସ୍ତ ସହ୍ୟ କର, ତେବେ ଯାଇ ତୁମର ଉଦ୍ଦେଶ୍ୟ ସଫଳ ହେବ । ୧୨୬

*************************************************************************************

ହୃଦୟ ଦିଅ, କେବେହେଲେ ହଟିଯିବାକୁ ହେବନାହିଁ । ୧୨୭

ନିର୍ଭର କର, କେବେହେଲେ ଭୟ ପାଇବ ନାହିଁ । ୧୨୮

ବିଶ୍ୱାସ କର, ଅନ୍ତରର ଅଧିକାରୀ ହେବ । ୧୨୯

ସାହସ ଦିଅ, କିନ୍ତୁ ଶଙ୍କା ଜଗାଇ ନ ଦେବାକୁ ଚେଷ୍ଟା କର । ୧୩୦

ଧୈର୍ଯ୍ୟ ଧର, ବିପଦ କଟିଯିବ । ୧୩୧

ଅହଙ୍କାର କରନାହିଁ, ଜଗତରେ ହୀନ ହୋଇ ରହିବାକୁ ପଡିବ ନାହିଁ । ୧୩୨

କେହି ତୁମକୁ ଦୋଷୀ କରିବା ପୂର୍ବରୁ କାତର ଭାବରେ ନିଜ ଦୋଷ ସ୍ୱୀକାର କର, ମୁକ୍ତ-କଳଙ୍କ ହେବ, ଜଗତର ସ୍ନେହର ପାତ୍ର ହେବ । ୧୩୩

ସଂଯତ ହୁଅ, କିନ୍ତୁ ନିର୍ଭିକ ହୁଅ । ୧୩୪

ସରଳ ହୁଅ, କିନ୍ତୁ ବେକୁବ ହୁଅନାହିଁ । ୧୩୫

ବିନୀତ ହୁଅ, ତାହା ବୋଲି ଦୁର୍ବଳହୃଦୟ ହୁଅନାହିଁ । ୧୩୬

*************************************************************************************

ନିଷ୍ଠା ରଖ, କିନ୍ତୁ ନିଷ୍ଠାନ୍ଧ ହୁଅନାହିଁ । ୧୩୭

ସାଧୁ ସାଜନାହିଁ, ସାଧୁ ହେବାକୁ ଚେଷ୍ଟା କର । ୧୩୮

କୌଣସି ମହାପୁରୁଷଙ୍କ ସହିତ ତୁମର ନିଜର ତୁଳନା କରନାହିଁ, କିନ୍ତୁ ସର୍ବଦା ତାଙ୍କର ଅନୁସରଣ କର । ୧୩୯

ଯଦି ପ୍ରେମ ଥାଏ, ତେବେ ଅପରକୁ ମୋର ବୋଲି କୁହ, କିନ୍ତୁ ସ୍ୱାର୍ଥ ରଖନାହିଁ । ୧୪୦

ପ୍ରେମର କଥା କହିବା ଆଗରୁ ପ୍ରେମ କର । ୧୪୧

*************************************************************************************

ଅନ୍ଧ ହେବା ଦୁର୍ଭାଗ୍ୟ ସତ, କିନ୍ତୁ ଯଷ୍ଟିଚ୍ୟୁତ ହେବା ଆହୁରି ଦୁର୍ଭାଗ୍ୟ, କାରଣ ଯଷ୍ଟିହିଁ ଅନେକାଂଶରେ ଚକ୍ଷୁର କାର୍ଯ୍ୟ କରେ । ୧୪୨

ସ୍କୁଲକୁ ଗଲେହିଁ ତାକୁ ଛାତ୍ର କୁହାଯାଏ ନାହିଁ, ଆଉ ମନ୍ତ୍ର ନେଲେହିଁ ତାକୁ ଶିଷ୍ୟ କୁହାଯାଏ ନାହିଁ,ହୃଦୟଟିକୁ ଶିକ୍ଷକ ବା ଗୁରୁଙ୍କ ଆଦେଶ ପାଳନ ନିମିତ୍ତ ସର୍ବଦା ଉନ୍ମୁକ୍ତ ରଖିବାକୁ ହୁଏ । ଅନ୍ତରରେ ସ୍ଥିର ବିଶ୍ୱାସ ଆବଶ୍ୟକ । ସେ ଯାହା କହିଦେବେ ତାହାହିଁ କରିବାକୁ ହେବ ବିନା ଆପତ୍ତିରେ, ବିନା ଓଜରରେ ବରଂ ପରମ ଆନନ୍ଦରେ । ୧୪୩

ଯେଉଁ ଛାତ୍ର ବା ଶିଷ୍ୟ ପ୍ରାଣପଣେ ଆନନ୍ଦର ସହିତ ଗୁରୁଙ୍କ ଆଦେଶ ପାଳନ କରିଛି, ସେ କଦାପି ବିଫଳ ହୋଇନାହିଁ । ୧୪୪

ଶିଷ୍ୟର କର୍ତ୍ତବ୍ୟ ପ୍ରାଣପଣେ ଗୁରୁଙ୍କ ଆଦେଶ ପାଳନ କରିବା, ଗୁରୁଙ୍କୁ ଲକ୍ଷ୍ୟ କରି ଚାଲିବା । ୧୪୫

ଯେତେବେଳେ ଦେଖିବ, ଗୁରୁଙ୍କ ଆଦେଶରେ ଶିଷ୍ୟର ଆନନ୍ଦ ହୋଇଛି, ମୁଖ ପ୍ରଫୁଲ୍ଲ ହୋଇ ଉଠିଛି, ସେତେବେଳେ ବୁଝିବ ଯେ ତା'ର ହୃଦୟରେ ଶକ୍ତି ଆସିଛି । ୧୪୬

**********************************************************************************

ଖବରଦାର, କାହାକୁ ହୁକୁମ କରି କିମ୍ବା ଚାକର ବାକର ଦ୍ୱାରା ଗୁରୁଙ୍କ ସେବା-ଶୁଶ୍ରୁଷା କରାଇବାକୁ ଯାଅନାହିଁ- ପ୍ରସାଦରୁ ବଞ୍ଚିତ ହୁଅନାହିଁ । ୧୪୭

ମା ନିଜ ହାତରେ ଛୁଆପିଲାଙ୍କର ଯତ୍ନ କରେ ବୋଲି ଛୁଆ ଉପରେ ଅଶ୍ରଦ୍ଧା ଆସେନାହିଁ- ସେଥିପାଇଁ ଏତେ ଭଲପାଇବା । ୧୪୮

ନିଜ ହାତରେ ଗୁରୁସେବା କରିଲେ ଅହଙ୍କାର ପତଳା ହୁଏ, ଅଭିମାନ ଦୂରେଇ ଯାଏ, ଆଉ ପ୍ରେମ ଆସେ । ୧୪୯

ଗୁରୁହିଁ ଭଗବାନଙ୍କର ସାକାର ମୂର୍ତ୍ତି, ଆଉ ସେହିଁ Absolute (ଅଖଣ୍ଡ) । ୧୫୦

ଗୁରୁଙ୍କୁ ମୋର ବୋଲି ଜାଣିବାକୁ ହୁଏ- ମା', ବାପ, ପୁଅ ଇତ୍ୟାଦି ଘରର ଲୋକଙ୍କ କଥା ଭାବିଲାବେଳେ ଯେପରି ତାଙ୍କର (ଗୁରୁଙ୍କର) ମୁହଁ ବି ମନେପଡେ । ୧୫୧

ତାଙ୍କର ଭର୍ତ୍ସନାର ଭୟ ରଖିବା ଅପେକ୍ଷା ଭଲପାଇବାର ଭୟ ରଖିବାହିଁ ଭଲ;- ମୁଁ ଯଦି ଅନ୍ୟାୟ କରେ ତେବେ ତାଙ୍କର ପ୍ରାଣରେ ବ୍ୟଥା ଲାଗିବ । ୧୫୨

ସବୁ ସମୟରେ ତାଙ୍କୁ ଅନୁସରଣ କରିବାକୁ ଚେଷ୍ଟା କର, ସେ ଯାହା କହନ୍ତି, ଯତ୍ନର ସହିତ ତାହା ରକ୍ଷାକରି ଅଭ୍ୟାସରେ ଚରିତ୍ରଗତ କରିବାକୁ ନିୟତ ଚେଷ୍ଟା କର; ଆଉ ତାହାହିଁ ସାଧନା । ୧୫୩

**********************************************************************************

ତୁମେ ଗୁରୁଙ୍କଠାରେ ଚିତ୍ତ ସଂଲଗ୍ନ କରି ଆତ୍ମୋନ୍ନୟନ ପାଇଁ ଯତ୍ନବାନ୍ ହୁଅ, ଅନ୍ୟମାନେ ତୁମ ବିଷୟରେ କ'ଣ କହୁଛନ୍ତି ଦେଖିବାକୁ ଯାଇ ଆକୃଷ୍ଟ ହୋଇ ପଡନାହିଁ- ତା'ହେଲେ ଆସକ୍ତ ହୋଇ ପଡିବ, ଆତ୍ମୋନ୍ନୟନ ହେବନାହିଁ । ୧୫୪

ସ୍ୱାର୍ଥବୁଦ୍ଧି ଅନେକ ସମୟରେ ଆଦର୍ଶରେ ଦୋଷାରୋପ କରେ, ସନ୍ଦେହ ଆଣେ, ଅବିଶ୍ୱାସ ଆଣେ । ସ୍ୱାର୍ଥବୁଦ୍ଧିବଶତଃ ଆଦର୍ଶରେ ଦୋଷ ଦେଖନାହିଁ, ସନ୍ଦେହ କରନାହିଁ, ଅବିଶ୍ୱାସ କରନାହିଁ- କରିଲେ ଅତ୍ମୋନ୍ନୟନ ହେବନାହିଁ । ୧୫୫

ମୁକ୍ତସ୍ୱାର୍ଥ ହୋଇ ଆଦର୍ଶରେ ଦୋଷ ଦେଖିଲେ ତାର ଅନୁସରଣ କରନାହିଁ- କରିଲେ ଅତ୍ମୋନ୍ନୟନ ହେବନାହିଁ । ୧୫୬

ଆଦର୍ଶର ଦୋଷ- ମୂଢ଼ ଅହଙ୍କାର, ସ୍ୱାର୍ଥ ଚିନ୍ତା, ଅପ୍ରେମ । ଅନୁସରଣକାରୀର ଦୋଷ- ସନ୍ଦେହ, ଅବିଶ୍ୱାସ, ସ୍ୱାର୍ଥବୁଦ୍ଧି । ୧୫୭

ଯିଏ ପ୍ରେମର ଅଧିକାରୀ, ନିସନ୍ଦେହ ଚିତ୍ତରେ ତାଙ୍କରି ଅନୁସରଣ କର, ମଙ୍ଗଳର ଅଧିକାରୀ ହେବହିଁ ହେବ । ୧୫୮

ଯିଏ ଛଳେ-ବଳେ-କୌଶଳେ, ଯେପରି ହେଉନା କାହିଁକି, ସର୍ବଭୂତର ମଙ୍ଗଳ ଚେଷ୍ଟାରେ ଯତ୍ନବାନ୍, ତାଙ୍କରି ଅନୁସରଣ କର, ମଙ୍ଗଳର ଅଧିକାରୀ ହେବହିଁ ହେବ । ୧୫୯

ଯିଏ କୌଣସି ପ୍ରକାରେ କାହାରିକୁ ମଧ୍ୟ ଦୁଃଖ ଦିଅନ୍ତି ନାହିଁ, ଅଥଚ ଅସତ୍‌ର ମଧ୍ୟ ପ୍ରଶ୍ରୟ ଦିଅନ୍ତି ନାହିଁ, ତାଙ୍କରି ଅନୁସରଣ କର, ମଙ୍ଗଳର ଅଧିକାରୀ ହେବହିଁ ହେବ । ୧୬୦

*********************************************************************************

ଯାହାଙ୍କୁ ତୁମେ ଚାଳକରୂପେ ମନୋନୀତ କରିନେଇଛ, ତାଙ୍କ ପାଖରେ ତୁମ ହୃଦୟର କୌଣସି କଥା ଗୋପନ ରଖନାହିଁ । ଗୋପନ କରିଲେ ତାଙ୍କୁ ଅବିଶ୍ୱାସ କରାହେବ, ଆଉ, ଅବିଶ୍ୱାସରେହିଁ ଅଧଃପତନ । ଚାଳକ ଅନ୍ତର୍ଯାମୀ, ଯଦି ଠିକ୍ ଠିକ୍ ବିଶ୍ୱାସ ହୁଏ, ତେବେ ତୁମେ କୁକାର୍ଯ୍ୟ ଆଦୌ କରିପାରିବ ନାହିଁ । ଆଉ, ଯଦି ବା କରିପକାଅ, ତେବେ ନିଶ୍ଚୟ ସ୍ୱୀକାର କରିବ । ଆଉ, ଗୋପନ କରିବାକୁ ଇଚ୍ଛା ହେଲେହିଁ ଜାଣିରଖ, ତୁମ ହୃଦୟରେ ଦୁର୍ବଳତା ଆସିଛି ଏବଂ ଅବିଶ୍ୱାସ ତୁମକୁ ଆକ୍ରମଣ କରିଛି, - ସାବଧାନ ହୁଅ, ନଚେତ୍ ଅନେକ ଦୂରକୁ ଗଡିଯିବ । ୧୬୧

ତୁମେ ଯଦି ଗୋପନ କର, ତୁମର ସତ୍-ଚାଳକ ମଧ୍ୟ ତୁମଠାରୁ ଆତ୍ମଗୋପନ କରିବେ; ଆଉ, ତୁମେ ତୁମ ହୃଦୟର ଭାବ ବ୍ୟକ୍ତ କର, ଉନ୍ମୁକ୍ତ ହୁଅ, ସେ ବି ତୁମ ସମ୍ମୁଖରେ ଉନ୍ମୁକ୍ତ ହେବେ, ଏହା ନିଶ୍ଚୟ । ୧୬୨

ଗୋପନ ଅଭିପ୍ରାୟରେ ଚାଳକଙ୍କୁ 'ଅନ୍ତର୍ଯାମୀ, ସବୁ ଜାଣି ପାରୁଛନ୍ତି'- ବୋଲି ଚାଲାକି କଲେ ନିଜେହିଁ ପତିତ ହେବ, ଦୁର୍ଦ୍ଦଶା ଘେରି ଧରିବ । ୧୬୩

ହୃଦୟ-ବିନିମୟ ଭଲପାଇବାର ଗୋଟିଏ ଲକ୍ଷଣ, ଆଉ ତୁମେ ଯଦି ସେହି ହୃଦୟକୁହିଁ ଗୋପନ କର, ତେବେ ଏହା ନିଶ୍ଚୟ ଯେ, ତୁମେ ସ୍ୱାର୍ଥଭାବାପନ୍ନ, ତାଙ୍କୁ କେବଳ କଥାରେହିଁ ଭଲପାଅ । ୧୬୪

କାମରେ ଗୋପନ ଅଛି, କିନ୍ତୁ ଭଲପାଇବାରେ ତ ଉଭୟଙ୍କ ଭିତରେ କିଛି ହେଲେ ଗୋପନ ରହିପାରେ ନାହିଁ । ୧୬୫

ସତ୍-ଗୁରୁ ପତଳା ଅହଂ ଯୁକ୍ତ; ସେ ନିଜର କ୍ଷମତା କୌଣସି ମତେ ତୁମ ଉପରେ ଜାହିର କରିବେ ନାହିଁ; ଏବଂ ସେଇଥିପାଇଁ ତୁମର ଭାବାନୁଯାୟୀ ତୁମକୁ ଅନୁସରଣ କରିବେ- ଆଉ ଏହାହିଁ ସତ୍-ଗୁରୁଙ୍କର ସ୍ୱଭାବ । ଯଦି ସତ୍-ଗୁରୁ ଅବଲମ୍ବନ କରିଥାଅ, ଯାହା କର, ଭୟନାହିଁ, ମରିବ ନାହିଁ; କିନ୍ତୁ କଷ୍ଟ ପାଇଁ ରାଜି ଥାଅ । ୧୬୬

**********************************************************************************

ଦୀନ ହେବା ଅର୍ଥ ଅପରିଚ୍ଛନ୍ନ ସାଜିବା ନୁହେଁ । ୧୬୭

ବ୍ୟାକୁଳତା ମାନେ ବିଜ୍ଞାପନ ନୁହେଁ, ବରଂ ହୃଦୟର ଏକାନ୍ତ ଉଦ୍ଦାମ ଆକାଂକ୍ଷା । ୧୬୮

ସ୍ୱାର୍ଥପରତା ସ୍ୱାଧୀନତା ନୁହେଁ ବରଂ ସ୍ୱାଧୀନତାର ଅନ୍ତରାୟ । ୧୬୯

ତୁମେ ଯେତେ ଲୋକଙ୍କର ସେବା କରିବ ସେତେ ଲୋକଙ୍କର ଯଥାସର୍ବସ୍ୱର ଅଧୀଶ୍ୱର ହେବ । ୧୭୦

ତେଜ ମାନେ କ୍ରୋଧ ନୁହେଁ, ବରଂ ବିନୟ ସମନ୍ୱିତ ଦୃଢତା । ୧୭୧

ସାଧୁ ମାନେ ଯାଦୁକର ନୁହେଁ, ବରଂ ତ୍ୟାଗୀ, ପ୍ରେମୀ । ୧୭୨

ଭକ୍ତ ମାନେ କ'ଣ ଅହମ୍ମକ ? – ବରଂ ବିନୀତ-ଅହଂଯୁକ୍ତ ଜ୍ଞାନୀ । ୧୭୩

ସହିଷ୍ଣୁତା ମାନେ ପଳାୟନ ନୁହେଁ, ପ୍ରେମର ସହିତ ଆଲିଙ୍ଗନ । ୧୭୪

**********************************************************************************

କ୍ଷମା କର, କିନ୍ତୁ ଅନ୍ତରର ସହିତ; ଭିତର ଗରମ ରଖି ଅପାରଗତାବଶତଃ କ୍ଷମାଶୀଳ ହେବାକୁ ଯାଅନାହିଁ । ୧୭୫

ବିଗ୍ରହର ଭାର, ଶାସ୍ତିର ଭାର ଆପଣା ହାତରେ ନେବାକୁ ଯାଅନାହିଁ; ଅନ୍ତରର ସହିତ ପରମପିତାଙ୍କ ଉପରେ ନ୍ୟସ୍ତ କର, ଭଲହେବ । ୧୭୬

କାହାରିକୁ ଅନ୍ୟାୟ ପାଇଁ ତୁମେ ଯଦି ଶାସ୍ତି ବିଧାନ କର, ନିଶ୍ଚୟ ଜାଣିଥାଅ- ପରମପିତା ସେହି ଶାସ୍ତି ଉଭୟଙ୍କ ମଧ୍ୟରେ ତାରତମ୍ୟାନୁସାରେ ଭାଗ କରିଦେବେ । ୧୭୭

ପିତାଙ୍କ ପାଇଁ, ସତ୍ୟ ପାଇଁ ଦୁଃଖ ଭୋଗ କର, ଅନନ୍ତ ଶାନ୍ତି ପାଇବ । ୧୭୮

ତୁମେ ସତ୍ୟରେ ଅବସ୍ଥାନ କର, ଅନ୍ୟାୟକୁ ସହ୍ୟ କରିବାକୁ ଚେଷ୍ଟାକର, ପ୍ରତିରୋଧ କରନାହିଁ, ଶୀଘ୍ରହିଁ ପରମ ମଙ୍ଗଳର ଅଧିକାରୀ ହେବ । ୧୭୯

**********************************************************************************

ଯଦି ପାପ କରିଥାଅ ତେବେ କାତର କଣ୍ଠରେ ତାହା ପ୍ରକାଶ କର, ଶୀଘ୍ରହିଁ ସାନ୍ତ୍ୱନା ପାଇବ । ୧୮୦

ସାବଧାନ ! ସଂକୀର୍ଣ୍ଣତା ବା ପାପକୁ ଗୋପନ ରଖନାହିଁ, ଉତ୍ତରୋତ୍ତର ବର୍ଦ୍ଧିତ ହୋଇ ଅତି ସତ୍ୱର ତୁମକୁ ଅଧଃପତନର ଚରମକୁ ନେଇଯିବ । ୧୮୧

ଅନ୍ତରରେ ଯାହା ଗୋପନ କରିବ, ତାହାହିଁ ବୃଦ୍ଧି ପାଇବ । ୧୮୨

*************************************************************************************

ଦାନ କର, କିନ୍ତୁ ଦୀନ ହୋଇ ପ୍ରତ୍ୟାଶା ନ ରଖି । ତୁମର ଅନ୍ତରରେ ଦୟାର ଦରଜା ଖୋଲିଯାଉ । ୧୮୩

ଦୟା କରିବା ହିସାବରେ ଦାନ ଅହଙ୍କାରର ପରିପୋଷକ । ୧୮୪

ଯିଏ କାତରଭାବରେ ତୁମର ଦାନ ଗ୍ରହଣ କରନ୍ତି, ଗୁରୁ ରୂପେ ସେ ତୁମ ହୃଦୟରେ ଦୟା ଭାବର ଉଦ୍‌ବୋଧନ କରନ୍ତି; ଅତଏବ କୃତଜ୍ଞ ହୁଅ ! ୧୮୫

ଯାହାକୁ ଦାନ କରିବ; ତା'ର ଦୁଃଖ ଅନୁଭବ କରି ସହାନୁଭୂତି ପ୍ରକାଶ କର, ସାହସ ଦିଅ, ସାନ୍ତ୍ୱନା ଦିଅ; ପରେ ଯାହା ସାଧ୍ୟ, ଯତ୍ନ ସହକାରେ ଦିଅ; ପ୍ରେମର ଅଧିକାରୀ ହେବ- ଦାନସିଦ୍ଧ ହେବ । ୧୮୬

ଦାନ କରି ପ୍ରକାଶ ଯେତେ ନ କର, ସେତେହିଁ ଭଲ, ଅହଙ୍କାରରୁ ରକ୍ଷା ପାଇବ । ୧୮୭

ଯାଚଞ୍ଚାକାରୀଙ୍କୁ ଫେରାଅ ନାହିଁ, ଅର୍ଥ ନହେଲେ ସହାନୁଭୂତି, ସାହସ, ସାନ୍ତ୍ୱନା, ମିଷ୍ଟକଥା, ଯା'ହେଉ ଗୋଟାଏ ଦିଅ- ହୃଦୟ କୋମଳ ହେବ । ୧୮୮

ଅପରର ମଙ୍ଗଳ-କାମନାହିଁ ନିଜ ମଙ୍ଗଳର ପ୍ରସ୍ତୁତି । ୧୮୯

*************************************************************************************

ହଗି ମରିବା ଅପେକ୍ଷା ଗୁଳି ମରିବା ଭଲ । ୧୯୦

ଯେ କଥାରେ କମ୍ କାମରେ ବେଶୀ ସେହିଁ ପ୍ରଥମ ଶ୍ରେଣୀର କର୍ମୀ; ଯେ ଯେପରି କହେ, ସେହିପରି କରେ, ସେ ମଧ୍ୟମ ଶ୍ରେଣୀର କର୍ମୀ; ଯେ କହେ ବେଶୀ, କାମରେ କମ୍, ସେ ତୃତୀୟ ଶ୍ରେଣୀର କର୍ମୀ; ଆଉ ଯାହାର କହିବାରେ ବି ଆଳସ୍ୟ, କରିବାରେ ବି ଆଳସ୍ୟ, ସେହିଁ ଅଧମ । ୧୯୧

ଦୌଡିଯାଅ, କିନ୍ତୁ ଧଇଁସଇଁ ହୋଇଯାଅ ନାହିଁ । ଆଉ ଯେପରି ଝୁଣ୍ଟି ନ ପଡ, ଦୃଷ୍ଟି ରଖ । ୧୯୨

ଯେଉଁ କାର୍ଯ୍ୟରେ ତୁମର ବିରକ୍ତି ଓ କ୍ରୋଧ ଆସୁଛି, ନିଶ୍ଚୟ ଜାଣ, ତାହା ପଣ୍ଡ ହେବା ଉପରେ । ୧୯୩

କାର୍ଯ୍ୟ ସାଧନ ସମୟରେ ତହିଁରୁ ଯେଉଁ ବିପଦ ଆସିବ ସେଥିପାଇଁ ରାଜିଥାଅ; ବିରକ୍ତ ବା ଅଧୀର ହୁଅନାହିଁ, ସଫଳତା ତୁମର ଦାସୀ ହେବ । ୧୯୪

ଚେଷ୍ଟା କର, ଦୁଃଖ କରନାହିଁ, କାତର ହୁଅନାହିଁ, ସଫଳତା ଆସିବହିଁ । ୧୯୫

କାର୍ଯ୍ୟକୁଶଳର ଚିହ୍ନ ଦୁଃଖର ପ୍ରଳାପ ନୁହେଁ । ୧୯୬

ଉତ୍ତେଜିତ ମସ୍ତିଷ୍କ ଓ ବୃଥା ଆଡମ୍ବରଯୁକ୍ତ ଚିନ୍ତା- ଦୁଇଟିହିଁ ଅସିଦ୍ଧିର ଲକ୍ଷଣ । ୧୯୭

ବିପଦକୁ ଫାଙ୍କିଦେଇ ଓ ପରାସ୍ତ କରି ସଫଳତା-ଲକ୍ଷ୍ମୀ ଲାଭ କର । ବିପଦ ଯେପରି ତୁମକୁ ସଫଳତାରୁ ବଞ୍ଚିତ ନ କରେ । ୧୯୮

ସୁଖ କିମ୍ବା ଦୁଃଖ ଯଦି ତୁମର ଗତିରୋଧ ନ କରେ ତେବେ ତୁମେ ନିଶ୍ଚୟ ଗନ୍ତବ୍ୟରେ ପହଞ୍ଚିବ, ସନ୍ଦେହ ନାହିଁ । ୧୯୯

*************************************************************************************

ଧନୀ ହୁଅ କ୍ଷତି ନାହିଁ, କିନ୍ତୁ ଦୀନ ଏବଂ ଦାତା ହୁଅ । ୨୦୦

ଧନବାନ୍ ଯଦି ଅହଙ୍କାରୀ ହୁଏ, ସେ ଦୁର୍ଦ୍ଦଶାରେ ଅବନତ ହୁଏ । ୨୦୧

ଦୀନତାହୀନ ଅହଙ୍କାରୀ ଧନୀ ପ୍ରାୟ ଅବିଶ୍ୱାସୀ ହୁଏ, ଆଉ ତା'ର ହୃଦୟରେ ସ୍ୱର୍ଗର ଦ୍ୱାର ଖୋଲେ ନାହିଁ । ୨୦୨

ଅହଙ୍କାରୀ ଧନୀ ମଳିନତାର ଦାସ, ତେଣୁ ଜ୍ଞାନକୁ ଉପେକ୍ଷା କରେ । ୨୦୩

*************************************************************************************

କ୍ଷମା କର, କିନ୍ତୁ କ୍ଷତି କରନାହିଁ । ୨୦୪

ପ୍ରେମ କର, କିନ୍ତୁ ଆସକ୍ତ ହୁଅନାହିଁ । ୨୦୫

ଖୁବ୍ ଭଲପାଅ, କିନ୍ତୁ ବିହ୍ୱଳ ହୁଅନାହିଁ । ୨୦୬

ବକ୍-ବକ୍ ହେବା ପୂର୍ଣ୍ଣତ୍ୱର ଚିହ୍ନ ନୁହେଁ । ୨୦୭

ଯଦି ନିଜେ ସନ୍ତୁଷ୍ଟ ବା ନିର୍ଭାବନା ହୋଇଥାଅ ତେବେ ଅନ୍ୟ ପାଇଁ ଚେଷ୍ଟାକର । ୨୦୮

ଯେଉଁ ପରିମାଣରେ ଦୁଃଖର କାରଣରେ ମନ ସଂଲଗ୍ନ ହୋଇ ଅଭିଭୂତ ହେବ, ସେହି ପରିମାଣରେ ହୃଦୟରେ ଭୟ ଆସିବ ଓ ଦୁର୍ବଳତାଗ୍ରସ୍ତ ହୋଇ ପଡିବ । ୨୦୯

ଯଦି ରକ୍ଷା ପାଇବାକୁ ଗୃହ, ଭୟ ଏବଂ ଦୁର୍ବଳତା ବୋଲି କିଚ୍ଛି ରଖନାହିଁ; ସତ୍-ଚିନ୍ତା ଓ ସତ୍-କର୍ମରେ ଡୁବି ରୁହ । ୨୧୦

ଅସତ୍‌ରେ ଆସକ୍ତି ହେତୁ ଭୟ, ଶୋକ ଓ ଦୁଃଖ ଆସେ । ୨୧୧

ଅସତ୍ ପରିହାର କର; ସତ୍‌ରେ ଆସ୍ଥାବାନ୍ ହୁଅ; ତ୍ରାଣ ପାଇବ । ୨୧୨

ସତ୍-ଚିନ୍ତାରେ ନିମଜ୍ଜିତ ଥାଅ, ସତ୍-କର୍ମ ତୁମର ସହାୟ ହେବ ଏବଂ ତୁମର ଚତୁର୍ଦ୍ଦିଗ ସତ୍ ହୋଇ ସବୁ ସମୟରେ ତୁମକୁ ରକ୍ଷା କରିବହିଁ କରିବ । ୨୧୩

*************************************************************************************

ଧର୍ମକୁ ଜାଣିବା ମାନେହିଁ ବିଷୟ୍ର ମୂଳ କାରଣକୁ ଜାଣିବା; ଆଉ ସେହି ଜାଣିବାହିଁ ଜ୍ଞାନ । ୨୧୪

ଏହି ମୂଳଆଡକୁ ଅନୁରକ୍ତିହିଁ ଭକ୍ତି ; ଆଉ ଭକ୍ତିର ତାରତମ୍ୟ ଅନୁସାରେ ହିଁ ଜ୍ଞାନର ମଧ୍ୟ ତାରତମ୍ୟ ହୁଏ । ଯେତିକି ଅନୁରକ୍ତିରେ ଯେତିକି ଜଣାଯାଏ, ଭକ୍ତି ଆଉ ଜ୍ଞାନ ମଧ୍ୟ ସେତିକି ହୁଏ । ୨୧୫

ତୁମେ ବିଷୟ୍ରେ ଯେତିକି ଆସକ୍ତ ହୁଅ, ବିଷୟ୍ ସମ୍ବନ୍ଧରେ ଜ୍ଞାନ ମଧ୍ୟ ସେତିକି ହୁଏ । ୨୧୬

ଜୀବନର ଉଦ୍ଦେଶ୍ୟ ଅଭାବକୁ ଏକଦମ୍ ତଡିଦେବା, ଆଉ ତାହା କେବଳ କାରଣକୁ ଜାଣିଲେହିଁ ହୋଇପାରେ । ୨୧୭

ଅଭାବରେ ପରିଶ୍ରାନ୍ତ ମନହିଁ ଧର୍ମ ବା ବ୍ରହ୍ମଜିଜ୍ଞାସା କରେ, ନତୁବା କରେନା । ୨୧୮

କେଉଁଥିରେ ଅଭାବ ଯାଏ, ଆଉ ତାହା କିପରି- ଏହି ଚିନ୍ତାରେହିଁ ପରିଶେଷରେ ବ୍ରହ୍ମଜିଜ୍ଞାସା ଆସେ । ୨୧୯

ଯାହା ଉପରେ ବିଷୟ୍ର ଅସ୍ତିତ୍ୱ ତାହାହିଁ ଧର୍ମ; ଯେ ପର୍ଯ୍ୟନ୍ତ ତାହା ଜଣାଯାଇ ନାହିଁ, ସେ ପର୍ଯ୍ୟନ୍ତ ବିଷୟ୍କୁ ଠିକ୍ ଠିକ୍ ଜଣା ହୋଇନାହିଁ । ୨୨୦

*****************************************************************************

ଯେଉଁ ଭାବ ବିରୁଦ୍ଧ ଭାବ ଦ୍ୱାରା ଆହତ ବା ଅଭିଭୂତ ହୁଏନା ତାହାହିଁ ବିଶ୍ୱାସ । ୨୨୧

ବିଶ୍ୱାସ ନଥିଲେ ଦର୍ଶନ ହେବ କିପରି ? ୨୨୨

କର୍ମ ବିଶ୍ୱାସକୁ ଅନୁସରଣ କରେ, ଯେପରି ବିଶ୍ୱାସ, କର୍ମ ମଧ୍ୟ ସେହିପରି ହୁଏ । ୨୨୩

ଗଭୀର ବିଶ୍ୱାସରେ ସବୁକିଛି ହୋଇପାରେ । ବିଶ୍ୱାସ କର,- ସାବଧାନ, ଅହଙ୍କାର, ଅଧୈର୍ଯ୍ୟ ଓ ବିରକ୍ତି ନ ଆସେ- ଯାହା ଗ୍ରହ ତାହାହିଁ ହେବ । ୨୨୪

ବିଶ୍ୱାସହିଁ ବିସ୍ତାର ଓ ଚୈତନ୍ୟ ଆଣିଦେଇପାରେ, ଆଉ ଅବିଶ୍ୱାସ ଜଡତ୍ୱ, ଅବସାଦ, ସଂକୀର୍ଣ୍ଣତା ଆଣିଥାଏ । ୨୨୫

ବିଶ୍ୱାସ ଯୁକ୍ତିତର୍କର ବାହାରେ, ଯଦି ବିଶ୍ୱାସ କର, ଯେତେ ଯୁକ୍ତିତର୍କ ତୁମର ସମର୍ଥନ କରିବହିଁ କରିବ । ୨୨୬

ତୁମେ ଯେପରି ଭାବରେ ବିଶ୍ୱାସ କରିବ, ଯୁକ୍ତିତର୍କ ତୁମକୁ ସେହିପରି ସମର୍ଥନ କରିବ । ୨୨୭

*****************************************************************************

ଭାବରେହିଁ ବିଶ୍ୱାସର ପ୍ରତିଷ୍ଠା । ଯୁକ୍ତିତର୍କ ବିଶ୍ୱାସକୁ ଆଣିଦେଇ ପାରେନାହିଁ । ଭାବ ଯେତେ ପତଳା, ବିଶ୍ୱାସ ସେତେ ପତଳା, ନିଷ୍ଠା ସେତେ କମ୍ । ୨୨୮

ବିଶ୍ୱାସ ବୁଦ୍ଧିର ଗଣ୍ଡିର ବାହାରେ; ବିଶ୍ୱାସ ଅନୁଯାୟୀ ବୁଦ୍ଧି ହୁଏ । ବୁଦ୍ଧିରେ ହଁ-ନାହିଁ ଅଛି, ସଂଶୟ୍ ଅଛି; ବିଶ୍ୱାସରେ ହଁ-ନାହିଁ ନାହିଁ, ସଂଶୟ୍ ନାହିଁ । ୨୨୯

*****************************************************************************

ଯାହାର ବିଶ୍ୱାସ ଯେତେ କମ୍ ସେ ସେତେ undeveloped (କଞ୍ଚା), ତା'ର ବୁଦ୍ଧି ସେତେ କମ୍ ତୀକ୍ଷ୍ଣ । ୨୩୦

ତୁମେ ପଣ୍ଡିତ ହୋଇପାର, କିନ୍ତୁ ଯଦି ଅବିଶ୍ୱାସୀ ହୁଅ, ତେବେ ତୁମେ କଳଗାଉଣା ରେକର୍ଡ କିମ୍ବା ଭାଷାବାହୀ ବଳଦ ପରି ନିଶ୍ଚୟ । ୨୩୧

ଯାହାର ପକ୍କା ବିଶ୍ୱାସ ନାହିଁ, ତାହାର ଅନୁଭୂତି ନାହିଁ; ଆଉ, ଯାହାର ଅନୁଭୂତି ନାହିଁ, ସେ ପୁଣି ପଣ୍ଡିତ କିପରି ? ୨୩୨

ଯାହାର ଅନୁଭୂତି ଯେତିକି, ତା'ର ଦର୍ଶନ, ଜ୍ଞାନ ସେତିକି; ଆଉ, ଜ୍ଞାନରେହିଁ ବିଶ୍ୱାସର ଦୃଢତା ।୨୩୩

ଯଦି ବିଶ୍ୱାସ ନ କର, ତୁମର ଦେଖା ମଧ୍ୟ ହୁଏନାହିଁ, ଅନୁଭବ କରିବା ମଧ୍ୟ ହୁଏନାହିଁ । ପୁଣି ଏହି ଦେଖା ଓ ଅନୁଭବ କରିବା ବିଶ୍ୱାସକୁହିଁ ପକ୍କା କରିଦିଏ । ୨୩୪

*****************************************************************************************

ଯେପରି ଆଦର୍ଶରେ ତୁମେ ବିଶ୍ୱାସ ସ୍ଥାପନ କରିବ, ତୁମର ସ୍ୱଭାବ ମଧ୍ୟ ସେହିଭାବରେ ଗଠିତ ହେବ, ଆଉ ତୁମର ଦର୍ଶନ ମଧ୍ୟ ତଦ୍ରୁପ ହେବ । ୨୩୫

ବିଶ୍ୱାସୀକୁ ଅନୁସରଣ କର, ଭଲ ପାଅ, ତୁମର ମଧ୍ୟ ବିଶ୍ୱାସ ଆସିବ । ୨୩୬

ମୋର ବିଶ୍ୱାସ ନାହିଁ- ଏହି ଭାବର ଅନୁସରଣରେ ମଣିଷ ହୀନବିଶ୍ୱାସ ହୋଇପଡେ । ୨୩୭

ବିଶ୍ୱାସ ନାହିଁ ଏଭଳି ମଣିଷ ନାହିଁ । ଯାହାର ବିଶ୍ୱାସ ଯେତେ ଗଭୀର, ଯେତେ ଉଚ୍ଚ, ତାହାର ମନ ସେତେ ଉଚ୍ଚ, ଜୀବନ ସେତେ ଗଭୀର । ୨୩୮

ଯେ ସତ୍‌ରେ ବିଶ୍ୱାସୀ ସେ ସତ୍ ହେବହିଁ, ଆଉ ଅସତ୍‌ରେ ବିଶ୍ୱାସୀ ଅସତ୍ ହୋଇପଡେ । ୨୩୯

*****************************************************************************************

ବିଶ୍ୱାସ ବିରୁଦ୍ଧ ଭାବଦ୍ୱାରା ଆକ୍ରାନ୍ତ ହେଲେହିଁ ସନ୍ଦେହ ଆସେ । ୨୪୦

ବିଶ୍ୱାସ ସନ୍ଦେହ-ଦ୍ୱାରା ଅଭିଭୂତ ହେଲେ ମନ ଯେତେବେଳେ ତାହା ସମର୍ଥନ କରେ ସେତେବେଳେହିଁ ଅବସାଦ ଆସେ । ୨୪୧

ପ୍ରତିକୂଳ ଯୁକ୍ତି ତ୍ୟାଗ କରି ବିଶ୍ୱାସର ଅନୁକୂଳ ଯୁକ୍ତି ଶ୍ରବଣ ଓ ମନନରେ ସନ୍ଦେହ ଦୂରୀଭୂତ ହୁଏ, ଅବସାଦ ରହେନାହିଁ । ୨୪୨

ବିଶ୍ୱାସ ପାଚିଗଲେ କୌଣସି ବିରୁଦ୍ଧ ଭାବହିଁ ଟଳାଇ ପାରେନାହିଁ । ୨୪୩

ପ୍ରକୃତ ବିଶ୍ୱାସୀର ସନ୍ଦେହ ବା କ'ଣ କରିବ ଅବସାଦ ବା କ'ଣ କରିବ ? ୨୪୪

ସନ୍ଦେହକୁ ପ୍ରଶ୍ରୟ ଦେଲେ ସେ ଘୁଣପୋକ ପରି ମନକୁ ଆକ୍ରମଣ କରେ, ଶେଷରେ ଅବିଶ୍ୱାସରୂପକ ଜୀର୍ଣ୍ଣତାର ଚରମ ମଳିନ ଦଶା ପ୍ରାପ୍ତ ହୁଏ । ୨୪୫

ସନ୍ଦେହର ନିରାକରଣ କରି ବିଶ୍ୱାସର ସ୍ଥାପନ କରିବାହିଁ ଜ୍ଞାନପ୍ରାପ୍ତି । ୨୪୬

ତୁମେ ଯଦି ପକ୍କା ବିଶ୍ୱାସୀ ହୁଅ, ବିଶ୍ୱାସ ଅନୁଯାୟୀ ଭାବ ଛଡା ଜଗତରେ କୌଣସି ବିରୁଦ୍ଧ ଭାବ, କୌଣସି ମନ୍ତ୍ର, କୌଣସି ଶକ୍ତି ତୁମକୁ ଅଭିଭୂତ ବା ଯାଦୁ କରିପାରିବ ନାହିଁ, ନିଶ୍ଚୟ ଜାଣ । ୨୪୭

ତୁମ ମନରୁ ଯେଉଁ ପରିମାଣରେ ବିଶ୍ୱାସ ହଟିଯିବ, ଜଗତ ସେହି ପରିମାଣରେ ତୁମକୁ ସନ୍ଦେହ କରିବ ବା ଅବିଶ୍ୱାସ କରିବ, ଏବଂ ଦୁର୍ଦ୍ଦଶା ମଧ୍ୟ ତୁମକୁ ସେହି ପରିମାଣରେ ଆକ୍ରମଣ କରିବ, ଏହା ନିଶ୍ଚୟ । ୨୪୮

ଅବିଶ୍ୱାସ-କ୍ଷେତ୍ର ଦୁର୍ଦ୍ଦଶା ବା ଦୁର୍ଗତିର ରାଜତ୍ୱ । ୨୪୯

ବିଶ୍ୱାସ-କ୍ଷେତ୍ର ଅତ୍ୟନ୍ତ ଉର୍ବର । ସାବଧାନ୍, ଅବିଶ୍ୱାସ ରୂପକ ଅନାବନା ଗଛରେ ସନ୍ଦେହରୂପକ ଅଙ୍କୁର ଉଠିବା ଦେଖିଲେହିଁ ତତ୍କ୍ଷଣାତ୍ ତାହା ଉତ୍ପାଟନ କର, ନଚେତ୍ ଭକ୍ତିରୂପକ ଅମୃତବୃକ୍ଷ ଗଜେଇ ପାରିବ ନାହିଁ । ୨୫୦

ଶ୍ରଦ୍ଧା ଓ ବିଶ୍ୱାସ ଦୁଇ ଭାଇ, ଗୋଟିଏ ଆସିଲେ ଅନ୍ୟଟିବି ଆସେ । ୨୫୧

ସନ୍ଦେହର ନିରାକରଣ କର, ବିଶ୍ୱାସର ସିଂହାସନରେ ଭକ୍ତିକୁ ବସାଅ, ହୃଦୟରେ ଧର୍ମରାଜ୍ୟ ସଂସ୍ଥାପିତ ହେଉ । ୨୫୨

ସତ୍‌ରେ ନିରବଚ୍ଛିନ୍ନ ସଂଲଗ୍ନ ରହିବାର ଚେଷ୍ଟାକୁହିଁ ଭକ୍ତି କହନ୍ତି । ୨୫୩

ଭକ୍ତହିଁ ପ୍ରକୃତ ଜ୍ଞାନୀ, ଭକ୍ତିବିହୀନ ଜ୍ଞାନ ବାଚକ-ଜ୍ଞାନ ମାତ୍ର । ୨୫୪

ତୁମେ ସୋଽହଂହିଁ କୁହ ଆଉ ବ୍ରହ୍ମାସ୍ମିହିଁ କୁହ, କିନ୍ତୁ ଭକ୍ତି ଅବଲମ୍ବନ କର, ତେବେହିଁ ସେହି ଭାବ ତୁମକୁ ଅବଲମ୍ବନ କରିବ; ନଚେତ୍ କେଉଁଥିରେ କିଛି ହେବନାହିଁ । ୨୫୫

ବିଶ୍ୱାସ ଯେପରି, ଭକ୍ତି ସେହିପରି ଭାବରେ ଆସିବ ଏବଂ ଜ୍ଞାନ ମଧ୍ୟ ତଦନୁଯାୟୀ । ୨୫୬

ଆଗେ ନିରହଙ୍କାର ହେବାକୁ ଚେଷ୍ଟାକର, ପରେ ସୋଽହଂ କୁହ, ନଚେତ୍ ସୋଽହଂ ତୁମକୁ ଆହୁରି ଅଧଃପତନକୁ ନେଇଯାଇପାରେ । ୨୫୭

ତୁମେ ଯଦି ସତ୍‌ଚିନ୍ତାରେ ସଂଯୁକ୍ତ ରହିବାକୁ ଚେଷ୍ଟାକର, ତୁମର ଚିନ୍ତା, ଆଗ୍ରହ, ବ୍ୟବହାର ଇତ୍ୟାଦି ଉଦାର ଏବଂ ସତ୍ୟ ହେଉଥିବ; ଆଉ ସେହି ଲକ୍ଷଣ ଗୁଡିକହିଁ ଭକ୍ତର । ୨୫୮

ସଂକୀର୍ଣ୍ଣତାର ନିକଟକୁ ଗଲେ ମନ ସଂକୀର୍ଣ୍ଣ ହୋଇପଡେ ଏବଂ ବିସ୍ତୃତିର ନିକଟକୁ ଗଲେ ମନ ବିସ୍ତୃତି ଲାଭ କରେ; ସେହିପରି ଭକ୍ତ ନିକଟକୁ ଗଲେ ମନ ଉଦାର ହୁଏ; ଆଉ, ଯେତେ ଉଦାରତା ସେତେହିଁ ଶାନ୍ତି । ୨୫୯

**********************************************************************************

ବିଷୟରେ ମନ ସଂଲଗ୍ନ ରହିବାକୁ ଆସକ୍ତି କହନ୍ତି, ଆଉ ସତ୍‌ରେ ସଂଲଗ୍ନ ରହିବାକୁ ଭକ୍ତି କହନ୍ତି । ୨୬୦

ପ୍ରେମ ଭକ୍ତିରହିଁ କ୍ରମୋନ୍ନତି । ଭକ୍ତିର ଗାଢତ୍ୱହିଁ ପ୍ରେମ । ଅହଙ୍କାର ଯେଉଁଠି ଯେତେ ପତଳା, ଭକ୍ତିର ସ୍ଥାନ ସେଠାରେ ସେତେ ବେଶୀ । ୨୬୧

ଭକ୍ତି ଭିନ୍ନ ସାଧନାରେ ସଫଳ ହେବାର ଉପାୟ୍ କେଉଁଠି ? ଭକ୍ତିହିଁ ସିଦ୍ଧି ଆଣିଦେଇପାରେ । ୨୬୨

ବିଶ୍ୱାସ ଯେପରି ଅନ୍ଧ ହୁଏନାହିଁ, ଭକ୍ତିମଧ୍ୟ ସେହିପରି ମୂଢ଼ା ହୁଏନାହିଁ । ୨୬୩

ଭକ୍ତିରେ କସ୍ମିନ୍‌କାଳେ କୌଣସି ପ୍ରକାର ଦୁର୍ବଳତା ନାହିଁ । ୨୬୪

କ୍ଲୀବତ୍ୱ, ଦୁର୍ବଳତା ଅନେକ ସମୟ୍ରେ ଭକ୍ତିର ଖୋଳପା ପିନ୍ଧି ଚ୍ଛିଡା ହୁଏ, ତା'ଠାରୁ ସାବଧାନ୍ ହୁଅ । ୨୬୫

**********************************************************************************

ଟିକିଏ କାନ୍ଦିଲେ ବା ନୃତ୍ୟଗୀତାଦିରେ ଉତ୍ତେଜିତ ହୋଇ ଲମ୍ଫ-ଝମ୍ପାଦି କଲେହିଁ ଯେ ଭକ୍ତି ହେଲା, ତାହା ନୁହେଁ; ସାମୟିକ ଭାବୋନ୍ମତ୍ତତାଦି ଭକ୍ତର ଲକ୍ଷଣ ନୁହେଁ । ଭକ୍ତର ଚରିତ୍ରରେ ପତଳା ଅହଙ୍କାରର ଚିହ୍ନ, ବିଶ୍ୱାସର ଚିହ୍ନ, ସତ୍‌ଚିନ୍ତାର ଚିହ୍ନ, ସତ୍‌ବ୍ୟବହାରର ଚିହ୍ନ ଏବଂ ଉଦାରତା ଇତ୍ୟାଦିର ଚିହ୍ନ କିଚ୍ଛିନା କିଚ୍ଛି ରହିବହିଁ ରହିବ, ନତୁବା ଭକ୍ତି ଆସିନାହିଁ । ୨୬୬

ବିଶ୍ୱାସ ନ ଆସିଲେ ନିଷ୍ଠା ଆସେନାହିଁ, ଆଉ, ନିଷ୍ଠା ଚ୍ଛଡା ଭକ୍ତି ରହିପାରେ ନାହିଁ । ୨୬୭

ଦୁର୍ବଳ ଭାବୋନ୍ମତ୍ତତା ଅନେକ ସମୟ୍ରେ ଭକ୍ତି ପରି ଦେଖାଯାଏ, ସେଠାରେ ନିଷ୍ଠା ନାହିଁ, ଆଉ, ଭକ୍ତିର ଚରିତ୍ରଗତ ଲକ୍ଷଣ ମଧ୍ୟ ନାହିଁ । ୨୬୮

ଯାହାର ହୃଦୟ୍ରେ ଭକ୍ତି ଅଚ୍ଛି, ସେ ବୁଝିପାରେନା ଯେ, ସେ ଭକ୍ତ; ଆଉ ଦୁର୍ବଳ, ନିଷ୍ଠାହୀନ, କେବଳ ଭାବପ୍ରବଣ, ଗାଢ଼-ଅହଂ-ଯୁକ୍ତ ହୃଦୟ୍ ଭାବେ- ମୁଁ ଖୁବ୍ ଭକ୍ତ । ୨୬୯

ଅଶ୍ରୁ, ପୁଲକ, ସ୍ୱେଦ, କଂପନ ହେଲେହିଁ, ଯେ ସେଠାରେ ଭକ୍ତି ଆସିଚ୍ଛି, ତା'ନୁହେଁ, ଭକ୍ତିର ଏହିଗୁଡିକ ସହିତ ତାହାର ସ୍ୱଧର୍ମ-ଚରିତ୍ରଗତ ଲକ୍ଷଣ ରହିବହିଁ ରହିବ । ୨୭୦

ଅଶ୍ରୁ, ପୁଲକ, ସ୍ୱେଦ, କଂପନ ଇତ୍ୟାଦି ଭାବର ଲକ୍ଷଣ; ତାହା ଅନେକ ପ୍ରକାରେ ହୋଇପାରେ ।୨୭୧

ଭକ୍ତିର ଚରିତ୍ରଗତ ଲକ୍ଷଣ ସହିତ ଯଦି ଏହି ଭାବର ଲକ୍ଷଣ ଗୁଡ଼ିକ ପ୍ରକାଶ ପାଏ, ତେବେହିଁ ତାହା ସାତ୍ତ୍ୱିକ ଭାବର ଲକ୍ଷଣ । ୨୭୨

**************************************************************************************************

ଜାଲ-ଭକ୍ତି ମୋଟା-ଅହଙ୍କାରଯୁକ୍ତ, ଅସଲଭକ୍ତି ଅହଙ୍କାରମୁକ୍ତ ଅର୍ଥାତ୍ ଖୁବ୍ ପତଳା ଅହଙ୍କାରଯୁକ୍ତ ।୨୭୩

ଜାଲ-ଭକ୍ତି ଯୁକ୍ତ ମଣିଷ ଉପଦେଶ ନେଇପାରେ ନାହିଁ, ଉପଦେଷ୍ଟା ରୂପେ ଉପଦେଶ ଦେଇପାରେ, ତେଣୁ କେହି ଉପଦେଶ ଦେଲେ ମୁହଁରେ ରାଗିବାର ଲକ୍ଷଣ, ବିରକ୍ତିର ଲକ୍ଷଣ, ସଙ୍ଗ ପରିହାରର ଚେଷ୍ଟା ଇତ୍ୟାଦିର ଲକ୍ଷଣ ପ୍ରାୟ୍ ସ୍ପଷ୍ଟ ପ୍ରକାଶ ପାଏ । ୨୭୪

ଅସଲ-ଭକ୍ତିଯୁକ୍ତ ମଣିଷ ଉପଦେଷ୍ଟାର ଆସନ ନେବାକୁ ଏକାବେଳେକେ ନାରାଜ । ଯଦି ଉପଦେଶ ପାଏ, ତା' ମୁହଁରେ ଆନନ୍ଦର ଚିହ୍ନ ଫୁଟି ବାହାରେ । ୨୭୫

ଅବିଶ୍ୱାସୀ ଓ ବହୁନୈଷ୍ଠିକର ହୃଦୟରେ ଭକ୍ତି ଆସିପାରେ ନାହିଁ । ୨୭୬

ଭକ୍ତି ଏକପାଇଁ ବହୁକୁ ଭଲପାଏ, ଆଉ ଆସକ୍ତି ବହୁପାଇଁ ଏକକୁ ଭଲପାଏ । ୨୭୭

ଆସକ୍ତିରେ ସ୍ୱାର୍ଥ ଲାଗି ଆତ୍ମତୁଷ୍ଟି, ଆଉ ଭକ୍ତିରେ ପରାର୍ଥ ଲାଗି ଆତ୍ମତୁଷ୍ଟି । ୨୭୮

ଭକ୍ତିର ଅନୁରକ୍ତି ସତ୍‌ରେ ଆଉ ଆସକ୍ତିର ନିଶା ସ୍ୱାର୍ଥରେ, ଅହଂରେ । ୨୭୯

ଆସକ୍ତି କାମର ପତ୍ନୀ, ଆଉ ଭକ୍ତି ପ୍ରେମର ଛୋଟ ଭଉଣୀ । ୨୮୦

**************************************************************************************************

ଅନୁଭୂତି ଦ୍ୱାରା ଯାହା ଜଣାଯାଏ ତାହାହିଁ ଜ୍ଞାନ । ୨୮୧

ଜାଣିବାକୁହିଁ ବେଦ କହନ୍ତି, ଆଉ ବେଦ ଅଖଣ୍ଡ । ୨୮୨

ଯେ ଯେତିକି ଜାଣେ, ସେ ସେତିକି ବେଦବିତ୍ । ୨୮୩

ଜ୍ଞାନ ଧନ୍ଦାକୁ ଧ୍ୱଂସ କରି ମଣିଷକୁ ପ୍ରକୃତ ଚକ୍ଷୁ ଦାନ କରେ । ୨୮୪

ଜ୍ଞାନ ବସ୍ତୁର ସ୍ୱରୂପକୁ ନିର୍ଦ୍ଦେଶ କରେ; ଆଉ, ବସ୍ତୁର ଯେଉଁ ଭାବ ଜାଣିଲେ ଜାଣିବା ବାକି ରହେନାହିଁ, ତାହାହିଁ ତାର ସ୍ୱରୂପ । ୨୮୫

ଭକ୍ତି ଚିତ୍ତକୁ ସତ୍‌ରେ ସଂଲଗ୍ନ କରିବାକୁ ଚେଷ୍ଟା କରେ, ଆଉ ତହିଁରୁ ଯେପରି ଉପଲବ୍ଧି ହୁଏ, ତାହାହିଁ ଜ୍ଞାନ । ୨୮୬

ଅଜ୍ଞାନତା ମଣିଷକୁ ଉଦ୍‌ବିଗ୍ନ କରେ, ଜ୍ଞାନ ମଣିଷକୁ ଶାନ୍ତ କରେ ।ଅଜ୍ଞାନତାହିଁ ଦୁଃଖର କାରଣ, ଆଉ ଜ୍ଞାନହିଁ ଆନନ୍ଦ । ୨୮୭

ତୁମେ ଯେତିକି ଜ୍ଞାନର ଅଧିକାରୀ ହେବ, ସେତିକି ଶାନ୍ତ ହେବ । ତୁମର ଜ୍ଞାନ ଯେପରି, ତୁମର ସ୍ୱଚ୍ଛନ୍ଦରେ ରହିବାର କ୍ଷମତା ମଧ୍ୟ ସେହିପରି । ୨୮୮

*******************************************************************************************

ଅହଙ୍କାର ଯେତେ ଘନ, ଅଜ୍ଞାନତା ସେତେ ବେଶୀ; ଆଉ ଅହଂ ଯେତେ ପତଳା, ଜ୍ଞାନ ସେତେ ଉଜ୍ଜ୍ୱଳ । ୨୮୯

ସନ୍ଦେହ ଅବିଶ୍ୱାସର ଦୂତ । ଆଉ ଅବିଶ୍ୱାସହିଁ ଅଜ୍ଞାନତାର ଆଶ୍ରୟ । ୨୯୦

ସନ୍ଦେହ ଆସିଲେ ତତ୍‌କ୍ଷଣାତ୍ ତାହା ନିରାକରଣର ଚେଷ୍ଟା କର, ଆଉ ସତ୍‌ଚିନ୍ତାରେ ନିମଗ୍ନ ହୁଅ- ଜ୍ଞାନର ଅଧିକାରୀ ହେବ ଆଉ, ଆନନ୍ଦ ପାଇବ । ୨୯୧

ଅସତ୍‌ଚିନ୍ତାରେ କୁଜ୍ଞାନ ବା ଅଜ୍ଞାନ ବା ମୋହ ଜନ୍ମେ । ତାହା ପରିହାର କର, ଦୁଃଖରୁ ରକ୍ଷା ପାଇବ । ୨୯୨

ତୁମେ ଅସତ୍‌ରେ ଯେତିକି ଆସକ୍ତ ହେବ, ସେତିକି ସ୍ୱାର୍ଥବୁଦ୍ଧିସଂପନ୍ନ ହେବ, ଆଉ ସେତିକି କୁଜ୍ଞାନ ବା ମୋହରେ ଆଛନ୍ନ ହୋଇ ପଡିବ; ଆଉ ରୋଗ, ଶୋକ, ଦାରିଦ୍ର୍ୟ, ମୃତ୍ୟୁ ଇତ୍ୟାଦି ଯନ୍ତ୍ରଣା ତୁମ ଉପରେ ସେତିକି ଆଧିପତ୍ୟ କରିବ, ଏହା ନିଶ୍ଚୟ । ୨୯୩

*******************************************************************************************

ଅହଙ୍କାର ଆସକ୍ତି ଆଣିଦିଏ, ଆସକ୍ତି ଆଣିଦିଏ ସ୍ୱାର୍ଥବୁଦ୍ଧି, ସ୍ୱାର୍ଥବୁଦ୍ଧି ଆଣେ କାମ, କାମରୁହିଁ କ୍ରୋଧର ଉତ୍ପତ୍ତି, ଆଉ କ୍ରୋଧରୁହିଁ ଆସେ ହିଂସା । ୨୯୪

ଭକ୍ତି ଆଣିଦିଏ ଜ୍ଞାନ; ଜ୍ଞାନଦ୍ୱାରାହିଁ ସର୍ବଭୂତରେ ଆତ୍ମବୋଧ ହୁଏ; ସର୍ବଭୂତରେ ଆତ୍ମବୋଧ ହେଲେହିଁ ଆସେ ଅହିଂସା । ଆଉ, ଅହିଂସା ଠାରୁ ହିଁ ଆସେ ପ୍ରେମ । ତୁମେ ଯେଉଁ ପରିମାଣରେ ଯେ କୌଣସି ଗୋଟିକର ଅଧିକାରୀ ହେବ, ସେହି ପରିମାଣରେ ସବୁଗୁଡିକର ଅଧିକାରୀ ହେବ । ୨୯୫

*******************************************************************************************

ଅହଙ୍କାରରୁହିଁ ଆସକ୍ତି ଆସେ; ଆସକ୍ତିରୁ ଅଜ୍ଞାନତା ଆସେ; ଅଜ୍ଞାନତାହିଁ ଦୁଃଖ । ୨୯୬

ସନ୍ଦେହରୁହିଁ ଅବିଶ୍ୱାସ ଆସେ; ଆଉ, ଅବିଶ୍ୱାସ-ହିଁ ଜଡତ୍ୱ । ୨୯୭

ଆଳସ୍ୟରୁ ମୂଢତା ଆସେ; ଆଉ, ମୂଢତାହିଁ ଅଜ୍ଞାନତା । ୨୯୮

ବାଧାପ୍ରାପ୍ତ କାମହିଁ କ୍ରୋଧ; ଆଉ, କ୍ରୋଧ-ହିଁ ହିଂସାର ବନ୍ଧୁ । ୨୯୯

ସ୍ୱାର୍ଥବୁଦ୍ଧିର ଆତ୍ମତୁଷ୍ଟିର ଅଭିପ୍ରାୟହିଁ ଲୋଭ; ଆଉ, ଏହି ଲୋଭହିଁ ଆସକ୍ତି । ଯେ ନିର୍ଲୋଭ, ସେହିଁ ଅନାସକ୍ତ । ୩୦୦

************************************************************************************

ସରଳ ସାଧୁତା ପରି ଆଉ ଚତୁରତା ନାହିଁ;- ଯେ ଯେପରି ହେଉନା କାହିଁକି ଏ ଫାନ୍ଦରେ ଧରା ପଡ଼ିବହିଁ ପଡ଼ିବ । Honesty is the best policy (ସରଳ ସାଧୁତାହିଁ ଚରମ କୌଶଳ). ୩୦୧

ବିନୟ ପରି ଆଉ ସମ୍ମୋହନ କାରକ ଆଉ କିଚ୍ଛିହିଁ ନାହିଁ । ୩୦୨

ପ୍ରେମ ପରି ଆକର୍ଷଣକାରୀ ବା ଆଉ କିଏ ? ୩୦୩

ବିଶ୍ୱାସ ପରି ଆଉ ସିଦ୍ଧି ନାହିଁ । ୩୦୪

ଜ୍ଞାନ ପରି ଆଉ ଦୃଷ୍ଟି ନାହିଁ । ୩୦୫

ଆନ୍ତରିକ ଦୀନତା ପରି ଅହଙ୍କାରକୁ ଜବତ୍ କରିବାର ଆଉ କିଚ୍ଛିହେଲେ ନାହିଁ । ୩୦୬

ସଦ୍‌ଗୁରୁଙ୍କର ଆଦେଶ ପାଳନ ପରି ଆଉ ମନ୍ତ୍ର କ'ଣ ଅଛି ? ୩୦୭

ଚ୍ଳଲ, ଆଗେଇ ଯାଅ, ରାସ୍ତା ଭାବି କ୍ଳାନ୍ତ ହୋଇପଡ ନାହିଁ, ତା'ହେଲେ ଆଉ ଯିବା ହେବନାହିଁ । ୩୦୮

************************************************************************************

ଯେ ଆଗେ ଝାଂପ ଦେଇଛି, ଆଗେ ପଥ ଦେଖାଇଛି, ସେ-ହିଁ ନେତା; ନତୁବା କେବଳ କଥାରେ କି ନେତା ହୋଇହୁଏ ? ୩୦୯

ଆଗେ ଅନ୍ୟ ପାଇଁ ଯଥା ସର୍ବସ୍ୱ ଢାଳିଦିଅ, ଦଶଜଣଙ୍କ ପାଦରେ ମଥା ବିକ୍ରୟ କର, ଆଉ, କାହାରି ଦୋଷ ବୋଲି ଦୋଷ ଦେଖିବା ଭୁଲିଯାଅ, ସେବାରେ ଆତ୍ମହରା ହୁଅ, ତେବେ ନେତା, ତେବେ ଦେଶର ହୃଦୟ, ତେବେ ଦେଶର ରାଜା । ନତୁବା ସେସବୁ କେବଳ ମୁହେଁ ମୁହେଁ ହୁଏନାହିଁ । ୩୧୦

ଯଦି ନେତା ହେବାକୁ ଚ୍ହ ତେବେ ନେତୃତ୍ୱର ଅହଙ୍କାର ତ୍ୟାଗ କର, ନିଜର ଗୁଣଗାନ ଛାଡିଦିଅ, ପରହିତରେ ଯଥାସର୍ବସ୍ୱ ପଣ କର, ଆଉ ଯାହା ମଙ୍ଗଳ ଓ ସତ୍ୟ ନିଜେ ତାହା କରି ଦେଖାଅ । ଆଉ ସମସ୍ତଙ୍କୁ ପ୍ରେମର ସହିତ କୁହ; ଦେଖିବ ହଜାର ହଜାର ଲୋକ ତୁମକୁ ଅନୁସରଣ କରିବେ । ୩୧୧

************************************************************************************

ନିର୍ଭର କର, ଆଉ ସାହସର ସହିତ ଅଦମ୍ୟ ଉତ୍ସାହରେ କାର୍ଯ୍ୟ କରିଯାଅ, ଲକ୍ଷ୍ୟ ରଖ, ତୁମ ଯୋଗୁଁ ତୁମ ନିଜର ଓ ଅନ୍ୟର କୌଣସି ପ୍ରକାର ଅମଙ୍ଗଳ ନ ଆସେ । ଦେଖିବ ସୌଭାଗ୍ୟ-ଲକ୍ଷ୍ମୀ ତୁମ ଘରେ ବନ୍ଧା ଥିବେ । ୩୧୨

କଥାରେ ଅଛି "ବୀରଭୋଗ୍ୟା ବସୁନ୍ଧରା !" ତା' ଠିକ୍; ବିଶ୍ୱାସ, ନିର୍ଭରତା ଓ ଆତ୍ମତ୍ୟାଗ- ଏହି ତିନୋଟି ହିଁ ବୀରତ୍ୱର ଲକ୍ଷଣ । ୩୧୩

*************************************************************************************

ନାମ-ଯଶ ଆତ୍ମୋନ୍ନୟନର ଘୋର ଅନ୍ତରାୟ । ତୁମର ଟିକିଏ ଉନ୍ନତି ହେଲେହିଁ ଦେଖିବ କେହି ତୁମକୁ ଠାକୁର ବନେଇ ବସିଛି, କେହି ମହାପୁରୁଷ କହୁଛି, କେହି ଅବତାର, କେହି ସଦ୍‌ଗୁରୁ ଇତ୍ୟାଦି କହୁଛି, ପୁଣି, କେହି ସଇତାନ୍, ବଦମାସ୍, କେହି ବ୍ୟବସାୟୀ ଇତ୍ୟାଦି ବି କହୁଛି; ସାବଧାନ, ତୁମେ ଏମାନଙ୍କ କାହାରି ଆଡକୁ ନଜର ଦିଅନା । ତୁମ ପକ୍ଷରେ ଏମାନେ ସମସ୍ତେ ଭୂତ । ନଜର ଦେଲେହିଁ କାନ୍ଧରେ ଚଢି ବସିବେ, ତାହା ଛୁଡାଇବା ମଧ୍ୟ ମହା ମୁସ୍କିଲ୍ । ତୁମେ ତୁମପରି କାର୍ଯ୍ୟ କରିଯାଅ, ଯାହା ଇଛା ତାହା ହେଉ । ୩୧୪

ନାମ-ଯଶ ଇତ୍ୟାଦିର ଆଶାରେ ଯଦି ତୁମର ମନ ଭକ୍ତର ଆଚରଣ କରେ, ତା'ହେଲେ ତ ମନରେ କପଟତା ଲୁଚି ରହିଛି,- ତତ୍‌କ୍ଷଣାତ୍ ତାକୁ ମାରି ବାହାର କରିଦିଅ । ତେବେହିଁ ମଙ୍ଗଳ, ନତୁବା ସବୁହିଁ ପଣ୍ଡ ହେବ । ୩୧୫

ଠାକୁର, ଅବତାର କିମ୍ବା ଭଗବାନ ଇତ୍ୟାଦି ହେବାର ସାଧ ହେଲେହିଁ ତୁମେ ନିଶ୍ଚୟ ଭଣ୍ଡ ହୋଇ ପଡିବ, ଆଉ ସେଥିରେ ମୁହଁରେ ହଜାର କହିଲେ ମଧ୍ୟ କାର୍ଯ୍ୟରେ କିଛି କରିପାରିବ ନାହିଁ । ଯଦି ସେପରି ଇଚ୍ଛା ରହିଥାଏ, ତେବେ ଏହିକ୍ଷଣି ତ୍ୟାଗ କର, ନତୁବା ଅମଙ୍ଗଳ ନିଶ୍ଚୟ । ୩୧୬

*************************************************************************************

ତୁମେ ଯେପରି ପ୍ରକୃତ ହେବ, ପ୍ରକୃତି ତୁମକୁ ସେହିପରି ଉପାଧି ନିଶ୍ଚୟ ଦେବେ ଏବଂ ନିଜ ଭିତରେ ସେହିପରି ଅଧିକାର ମଧ୍ୟ ଦେବେ; ଏହା ନିତ୍ୟ ପ୍ରତ୍ୟକ୍ଷ କରୁଛ; ତେବେ ଆଉ ଗୃହିବ କ'ଣ ? ପଢି ପାଶ୍ ନକଲେ କ'ଣ ୟୁନିଭର୍‌ସିଟି କାହାକୁ ଉପାଧି ଦେଇଥାଏ ? ୩୧୭

ଭୁଲ୍‌ରେ ବି ନିଜକୁ ପ୍ରଗ୍ରର କରିବାକୁ ଯାଅନାହିଁ ବା ନିଜକୁ ପ୍ରଗ୍ରର କରିବାକୁ କାହାକୁ ଅନୁରୋଧ କରନାହିଁ- ତା'ହେଲେ ସମସ୍ତେ ତୁମକୁ ଘୃଣା କରିବେ ଆଉ ତୁମଠାରୁ ଦୂରେଇ ଯିବେ । ୩୧୮

ତୁମେ ଯଦି କୌଣସି ସତ୍ୟ ଜାଣିଥାଅ ଆଉ ତାହା ଯଦି ମଙ୍ଗଳପ୍ରଦ ବୋଲି ଜାଣ, ପ୍ରାଣପଣେ ତାହାରି ବିଷୟ କୁହ ଏବଂ ସମସ୍ତଙ୍କୁ ଜାଣିବାକୁ ଅନୁରୋଧ କର । ବୁଝିପାରିଲେ ସମସ୍ତେ ତୁମର କଥା ଶୁଣିବେ ଏବଂ ତୁମର ଅନୁସରଣ କରିବେ । ୩୧୯

ତୁମେ ଯଦି ସତ୍ୟ ଦେଖିଥାଅ, ବୁଝିଥାଅ, ତେବେ ତୁମର କାୟମନୋବାକ୍ୟରେ ତାହା ଫୁଟି ବାହାରିବହିଁ ବାହାରିବ । ତୁମେ ସେଥିରେ ହଜି ନ ଯିବା ପର୍ଯ୍ୟନ୍ତ କେବେହେଲେ ସ୍ଥିର ରହିପାରିବ ନାହିଁ; ସୂର୍ଯ୍ୟଙ୍କୁ କ'ଣ ଅନ୍ଧକାର ଢାଙ୍କି ରଖିପାରେ ? ୩୨୦

**************************************************************************************

ତୁମ ଭିତରେ ଯଦି ନ ଥାଏ, ତେବେ ହଜାର କୁହ, ହଜାର ବାହାନା କର, ହଜାର କାଇଦା ବି ଦେଖାଅ, ତୁମ ଚରିତ୍ରରେ, ତୁମ ମନରେ, ତୁମ ବାକ୍ୟରେ, ତାହାର ଜ୍ୟୋତି କେବେହେଲେ ଫୁଟିବ ନାହିଁ; ସୂର୍ଯ୍ୟ ଯଦି ନ ଥାଏ, ତେବେ ବହୁ ଆଲୋକ ମଧ୍ୟ ଅନ୍ଧକାରକୁ ଏକଦମ୍ ତଡି ଦେଇପାରେ ନାହିଁ । ୩୨୧

ଯେ ସତ୍ୟ ପ୍ରଚାର କରିବାକୁ ଯାଇ ନିଜ ମହତ୍ତ୍ୱର ଗଳ୍ପ କରେ ଏବଂ ସବୁ ସମୟରେ ନିଜକୁହିଁ ନେଇ ବ୍ୟସ୍ତ, ଆଉ, ନାନା ରକମର କାଇଦା କରି ନିଜକୁ ସୁନ୍ଦର ଦେଖାଇବାକୁ ଚାହେ, ଯାହାର ପ୍ରତି ଅଙ୍ଗ ସଞ୍ଚାଳନରେ ଝଲକେ ଝଲକେ ଅହଙ୍କାର ଫୁଟି ବାହାରୁଛି, ଯାହାର ପ୍ରେମରେ ଅହଙ୍କାର, କଥାରେ ଅହଙ୍କାର, ଦୀନତାରେ ଅହଙ୍କାର, ବିଶ୍ୱାସରେ, ଜ୍ଞାନରେ, ଭକ୍ତିରେ, ନିର୍ଭରତାରେ ଅହଙ୍କାର,- ସେ ହଜାର ପଣ୍ଡିତ ହେଉ, ଆଉ ସେ ଯେତେବି ଜ୍ଞାନ ଭକ୍ତିର କଥା କହୁନା କାହିଁକି, ନିଶ୍ଚୟ ଜାଣ ସେ ଭଣ୍ଡ; ତା' ପାଖରୁ ବହୁଦୂରକୁ ହଟିଯାଅ; ତା'କଥା ଶୁଣନାହିଁ; କେବେହେଲେ ତା' ହୃଦୟରେ ସତ୍ୟ ନାହିଁ; ମନରେ ସତ୍ୟ ନ ଥିଲେ ଭାବ କିପରି ଆସିବ ? ୩୨୨

ପ୍ରଚାରର ଅହଙ୍କାର ପ୍ରକୃତ-ପ୍ରଚାରର ଅନ୍ତରାୟ । ସେ ହିଁ ପ୍ରକୃତ ପ୍ରଚାରକ- ଯେ, ଆପଣା ମହତ୍ତ୍ୱର କଥା ଭୁଲରେ ମଧ୍ୟ ମୁହଁରେ ଧରେ ନାହିଁ, ଆଉ, ଶରୀର ଦ୍ୱାରା ସତ୍ୟର ଆଚରଣ କରେ, ମନରେ ସତ୍ୟଚିନ୍ତାରେ ମୁଗ୍ଧ ଥାଏ ଏବଂ ମୁହଁରେ ମନର ଭାବାନୁଯାୟୀ ସତ୍ୟର ବିଷୟ କୁହେ । ୩୨୩

ଯେଉଁଠି ଦେଖିବ, କେହି ବିଶ୍ୱାସର ଗର୍ବର ସହିତ ସତ୍ୟର ବିଷୟ କହୁଛି, ଦୟାର କଥା କହୁ କହୁ ଆନନ୍ଦରେ ଏବଂ ଦୀନତାରେ ଅଧୀର ହୋଇପଡୁଛି, ପ୍ରେମର ସହିତ ଆବେଗଭରେ ସମସ୍ତଙ୍କୁ ଡାକୁଛି, ଆଲିଙ୍ଗନ କରୁଛି, ଆଉ, ଯେଉଁ ମୁହୂର୍ତ୍ତରେ ତା'ର ମହତ୍ତ୍ୱର କଥା କେହି କହୁଛି, ତାହା ସ୍ୱୀକାର କରୁନାହିଁ ବରଂ ଦୀନ ଏବଂ ମ୍ଳାନ ହୋଇ ବୁକୁ ଫାଟିଲା ପରି ହୋଇପଡୁଛି- ଖୁବ୍ ହିଁ ଠିକ୍, ତା ପାଖରେ ଉଜ୍ଜ୍ୱଳ ସତ୍ୟ ଅଛି ହିଁ ଅଛି; ଆଉ ତାହାର ସାଧାରଣ ଚରିତ୍ରରେ ମଧ୍ୟ ଦେଖିପାରିବ, ସତ୍ୟ ଫୁଟି ବାହାରୁଛି । ୩୨୪

ତୁମେ ଭକ୍ତିରୂପକ ତେଲରେ ଜ୍ଞାନରୂପକ ବଳିତା ଭିଜାଇ ସତ୍ୟରୂପକ ଆଲୋକ ଜଳାଅ, ଦେଖିବ କେତେ ଝିଣ୍ଟିକା, କେତେ ପୋକ, କେତେ ଜାନୁଆର୍, କେତେ ମଣିଷ ତୁମକୁ କିପରି ଘେରି ଧରିଛନ୍ତି । ୩୨୫

ଯେ ସତ୍‌କୁହିଁ ଚିନ୍ତା କରେ, ସତ୍‌କୁହିଁ ଯାଜନ କରେ, ଯେ ସତ୍ୟରହିଁ ଭକ୍ତ, ସେ-ହିଁ ପ୍ରକୃତ ପ୍ରଚାରକ । ୩୨୬

ଆଦର୍ଶରେ ଗଭୀର ବିଶ୍ୱାସ ନଥିଲେ ନିଷ୍ଠା ମଧ୍ୟ ଆସେ ନାହିଁ, ଭକ୍ତି ମଧ୍ୟ ଆସେ ନାହିଁ; ଆଉ ଭକ୍ତି ନ ହେଲେ ଅନୁଭୂତି ବା କ'ଣ ହେବ, ଜ୍ଞାନ ବା କ'ଣ ହେବ ଆଉ, ସେ ପ୍ରଚାର ବା କରିବ କ'ଣ ?୩୨୭

ପ୍ରକୃତ ସତ୍ୟପ୍ରଚାରକର ଅହଙ୍କାର ତା'ର ଆଦର୍ଶରେ; ଆଉ ଭଣ୍ଡ ପ୍ରଚାରକର ଅହଙ୍କାର ଆତ୍ମପ୍ରଚାରରେ । ୩୨୮

ଯାହା ମଙ୍ଗଳ ବୋଲି ଜାଣିବ, ଯାହା ସତ୍ୟ ବୋଲି ଜାଣିବ, ମଣିଷକୁ କହିବା ପାଇଁ ହୃଦୟ ଫାଟିଲା ପରି ହୋଇ ଉଠିବ, ମଣିଷ ତୁମକୁ ଯାହା କହୁନା କାହିଁକି ମନରେ କିଛି ହେବନାହିଁ, କିନ୍ତୁ ମଣିଷକୁ ସତ୍ୟମୁଖୀ ଦେଖିଲେ ଆନନ୍ଦ ହେବ,- ତେବେହିଁ ତାକୁ ପ୍ରଚାର କୁହାଯିବ । ୩୨୯

ଠିକ୍ ଠିକ୍ ବିଶ୍ୱାସ, ନିର୍ଭରତା ଓ ଭକ୍ତି ନ ଥିଲେ ସେ କେବେହେଲେ ପ୍ରଚାରକ ହୋଇ ପାରେନା । ୩୩୦

*******************************************************************************

ଯେ ନିଜକୁ ପ୍ରଚାର କରେ, ସେ ଆତ୍ମପ୍ରବଞ୍ଚନା କରେ; ଆଉ, ଯେ ସତ୍ୟ ବା ଆଦର୍ଶରେ ମୁଗ୍ଧ ହୋଇ ତା'ବିଷୟରେ କୁହେ ସେ କିନ୍ତୁ ଠିକ୍ ଠିକ୍ ଆତ୍ମପ୍ରଚାର କରେ । ୩୩୧

ପ୍ରକୃତ ସତ୍ୟ-ପ୍ରଚାରକହିଁ ଜଗତର ପ୍ରକୃତ ମଙ୍ଗଳାକାଂକ୍ଷୀ । ତା'ର ଦୟାରେ କେତେ ଜୀବର ଯେ ଆତ୍ମୋନ୍ନୟନ ହୁଏ, ତା'ର ଇୟତ୍ତା ନାହିଁ । ୩୩୨

ତୁମେ ସତ୍ୟ ବା ଆଦର୍ଶରେ ମୁଗ୍ଧ ରୁହ, ହୃଦୟରେ ଭାବ ଆପଣାଛାଏଁ ଉଚ୍ଛୁଳି ଉଠିବ, ଆଉ ସେହି ଭାବରେ ଅନୁପ୍ରାଣିତ ହୋଇ କେତେ ଲୋକଙ୍କର ଯେ ଉନ୍ନତି ହେବ, ତା'ର କିନାରା ନାହିଁ । ୩୩୩

ଗୁରୁ ହେବାକୁ ଚାହ ନାହିଁ । ଗୁରୁମୁଖ ହେବାକୁ ଚେଷ୍ଟାକର; ଆଉ, ଗୁରୁମୁଖ ହିଁ ଜୀବର ପ୍ରକୃତ ଉଦ୍ଧାର-କର୍ତ୍ତା । ୩୩୪

*******************************************************************************

ଦେହ ଥିବାଯାଏ ଅହଙ୍କାର ଯାଏନାହିଁ, ଆଉ ଭାବ ଥିବାଯାଏ ଅହଂ ମଧ୍ୟ ଯାଏନାହିଁ । ତେବେ ନିଜର ଅହଂ ଆଦର୍ଶର ଉପର ଦେଇ, passive ହୋଇ ଯେ ଯେତେ ରହିପାରେ, ସେ ସେତେ ନିରହଙ୍କାର ଏବଂ ସେ ସେତେ ଉଦାର । ୩୩୫

ନିଜର ଗର୍ବ ଯେତେ ନ କରାଯାଏ ତେତେହିଁ ମଙ୍ଗଳ, ଆଉ ଆଦର୍ଶର ଗର୍ବ ଯେତେ କରାଯାଏ ତେତେହିଁ ମଙ୍ଗଳ । ୩୩୬

ପରମପିତାହିଁ ତୁମର ଅହଙ୍କାରର ବିଷୟ୍ ହୁଅନ୍ତୁ, ଆଉ ତୁମେ ତାଙ୍କୁହିଁ ନେଇ ଆନନ୍ଦ ଉପଭୋଗ କର । ୩୩୭

ଅସତ୍ ଆଦର୍ଶରେ ତୁମର ଅହଙ୍କାର ନ୍ୟସ୍ତ କରନାହିଁ; ତା'ହେଲେ ତୁମର ଅହଙ୍କାର ଆହୁରି କଠିନ ହେବ । ୩୩୮

ଆଦର୍ଶ ଯେତେ ଉଚ୍ଚ ବା ଉଦାର ହୁଏ, ସେତେହିଁ ଭଲ; କାରଣ, ଯେତେ ଉଚ୍ଚତା ବା ଉଦାରତାର ଆଶ୍ରୟ୍ ନେବ, ତୁମେ ମଧ୍ୟ ସେତେ ଉଚ୍ଚ ଓ ଉଦାର ହେବ । ୩୩୯

*****************************************************************************************

ଯେତେବେଳେ ଦେଖିବ ମଣିଷ ତୁମକୁ ପ୍ରଣାମ କରୁଚ୍ଛି, ଆଉ ସେଥିରେ ତୁମର ବିଶେଷ କିଚ୍ଛି ଆପତ୍ତି ହେଉନାହିଁ, ମୌଖିକ ଥରେ ଥରେ ଆପତ୍ତି କରୁଚ୍ଛ ସତ- ମନରେ ବିଶେଷ ଗୋଟାଏ କିଚ୍ଛି ହେଉନାହିଁ- ସେତେବେଳେହିଁ ଠିକ୍ ଜାଣିଥାଅ, ଅନ୍ତରରେ ଗ୍ରେର ପରି ହାମ୍‌ବଡାଇ ପଶିଚ୍ଛି; ତୁମେ ଯେତେ ଶୀଘ୍ର ପାର ସାବଧାନ୍ ହୁଅ, ନତୁବା ନିଶ୍ଚୟ୍ ଅଧଃପାତେ ଯିବ । ୩୪୦

ଆଉ, ଯେତେବେଳେ କେହି ପ୍ରଣାମ କରିଲେହିଁ ସଙ୍ଗେ ସଙ୍ଗେ ଦୀନତାରେ ତୁମର ମଥା ନଇଁ ଯାଉଚ୍ଛି, ସେବା ନେବାକୁ ମନ ଆଦୌ ରାଜି ନୁହେଁ, ବରଂ ସେବା କରିବାକୁ ମନ ସବୁ ସମୟ୍ରେ ବ୍ୟସ୍ତ ରହୁଚ୍ଛି,- ଆଦର୍ଶର କଥା କହିଲେ ପ୍ରାଣରେ ଆନନ୍ଦ ବୋଧ ହେଉଚ୍ଛି- ତୁମର ଭୟ୍ ନାହିଁ ତୁମେ ମଙ୍ଗଳର କୋଳରେହିଁ ରହିଚ୍ଛ; ଆଉ ନିୟ୍ତ ଆହୁରି ବେଶୀ ସେହିପରି ରହିବାକୁ ଚେଷ୍ଟାକର । ୩୪୧

*****************************************************************************************

ତୁମେ ଲତାର ସ୍ୱଭାବ ଅବଲମ୍ବନ କର, ଆଉ, ଆଦର୍ଶରୂପ ବୃକ୍ଷକୁ ଜଡାଇ ଧର- ସିଦ୍ଧକାମ ହେବ । ୩୪୨

ଯଦି ତୁମର ଆଦର୍ଶର କଥା କହିଲେ ଆନନ୍ଦ, ଶୁଣିଲେ ଆନନ୍ଦ, ତାଙ୍କର ଚିନ୍ତାରେ ଆନନ୍ଦ, ତାଙ୍କ ହୁକୁମ୍ ପାଇଲେ ଆନନ୍ଦ, ତାଙ୍କ ଆଦରରେ ଆନନ୍ଦ, ଅନାଦରରେ ମଧ୍ୟ ପାଇଲେ ଆନନ୍ଦ ହୁଏ, ତାଙ୍କ ନାମରେ ହୃଦୟ୍ ଉଚ୍ଛୁଳି ଉଠେ- ମୁଁ ନିଶ୍ଚୟ୍ କହୁଚ୍ଛି ତୁମର ଉନ୍ନୟ୍ନ ପାଇଁ ଆଉ ଭାବିବାକୁ ହେବନାହିଁ ।୩୪୩

ସଦ୍‌ଗୁରୁଙ୍କର ସରଣାପନ୍ନ ହୁଅ, ସତ୍‌ନାମ ମନନ କର, ଆଉ ସତ୍‌ସଙ୍ଗର ଆଶ୍ରୟ୍ ଗ୍ରହଣ କର- ମୁଁ ନିଶ୍ଚୟ୍ କହୁଚ୍ଛି, ତୁମକୁ ଆଉ ତୁମର ଉନ୍ନୟ୍ନ ପାଇଁ ଭାବିବାକୁ ହେବନାହିଁ । ୩୪୪

ତୁମେ ଭକ୍ତି ରୂପକ ଜଳ ତ୍ୟାଗ କରି ଆସକ୍ତି ରୂପକ ବାଲିଚଡାରେ ବହୁଦୂର ଯାଅନାହିଁ, ଦୁଃଖରୂପକ ସୂର୍ଯ୍ୟୋତ୍ତାପରେ ବାଲିଚଡା ଗରମ ହେଲେ ଫେରିଆସିବା ମୁସ୍କିଲ୍ ହେବ; ଅଳ୍ପ ଉତ୍ତପ୍ତ ହେଉ ହେଉ ଯଦି ଫେରି ନ ଆସିପାର ତେବେ ସୁଖି ମରିବାକୁ ହେବ । ୩୪୫

ଭାବମୁଖୀ ହୋଇ ରହିବାକୁ ଚେଷ୍ଟାକର, ପତିତ ହେବନାହିଁ ବରଂ ଅଗ୍ରସର ହେଉଥିବ । ୩୪୬

ଗୁରୁମୁଖୀ ହେବାକୁ ଚେଷ୍ଟାକର, ଆଉ ମନର ଅନୁସରଣ କରନାହିଁ- ଉନ୍ନତି ତୁମକୁ କୌଣସି ମତେ ତ୍ୟାଗ କରିବ ନାହିଁ । ୩୪୭

ବିବେକକୁ ଅବଲମ୍ବନ କର, ଆଉ ମନର ଅନୁସରଣ କରନାହିଁ- ଉଦାରତା ତୁମକୁ କେବେହେଲେ ତ୍ୟାଗ କରିବ ନାହିଁ । ୩୪୮

ସତ୍ୟକୁ ଆଶ୍ରୟ କର, ଆଉ ଅସତ୍ୟର ଅନୁଗମନ କରନାହିଁ- ଶାନ୍ତି ତୁମକୁ କୌଣସି ମତେ ଛାଡି ରହିବ ନାହି । ୩୪୯

ଦୀନତାକୁ ଅନ୍ତରରେ ସ୍ଥାନ ଦିଅ- ଅହଙ୍କାର ତୁମର କିଛି ବି କରିପାରିବ ନାହିଁ । ୩୫୦

ଯାହା ତ୍ୟାଗ କରିବାକୁ ହେବ, ତା'ଆଡକୁ ଆକୃଷ୍ଟ ବା ଆସକ୍ତ ହୁଅନାହିଁ- ଦୁଃଖରୁ ରକ୍ଷାପାଇବ ।୩୫୧

**************************************************************************************

ପ୍ରେମକୁ ପ୍ରାର୍ଥନା କର, ଆଉ ହିଂସାକୁ ଦୂରକୁ ପରିହାର କର, ଜଗତ ତୁମଆଡକୁ ଆକୃଷ୍ଟ ହେବହିଁ ହେବ । ୩୫୨

ତୁମ ମନର ସନ୍ୟାସ ହେଉ; ସନ୍ୟାସୀ ସାଜି ମିଚ୍ଛାମିଚ୍ଛି ବହୁରୂପୀ ହୋଇ ବସନାହିଁ । ୩୫୩

ତୁମର ମନ ସତ୍‌ରେ ବା ବ୍ରହ୍ମରେ ବିଚରଣ କରୁ, କିନ୍ତୁ ଶରୀରକୁ ଗେରୁଆ ବା ବିଭିନ୍ନ ରଙ୍ଗରେ ସଜାଇବାରେ ବ୍ୟସ୍ତ ହୁଅନାହିଁ, ତା'ହେଲେ ମନ ଶରୀରମୁଖୀ ହୋଇ ପଡିବ । ୩୫୪

ଅହଙ୍କାର ତ୍ୟାଗ କର, ସତ୍‌ସ୍ୱରୂପରେ ଅବସ୍ଥାନ କରିପାରିବ । ୩୫୫

ପତିତକୁ ଉଦ୍ଧାରର କଥା ଶୁଣାଅ, ଆଶା ଦିଅ, ଛଳେ-ବଳେ-କୌଶଳେ ତା'ର ଉନ୍ନୟନରେ ସାହାଯ୍ୟ କର, ସାହସ ଦିଅ- କିନ୍ତୁ ଉଚ୍ଛୃଙ୍ଖଳ ହେବାକୁ ଦିଅନାହିଁ । ୩୫୬

ଯଦି କୌଣସି ଦିନ ତୁମର ପ୍ରେମାସ୍ପଦଙ୍କୁ ସର୍ବସ୍ୱ ବିକିଦେଇ ନିମଜ୍ଜିତ ହୋଇଥାଅ- ଆଉ ଭାସି ଉଠିବାର ଆଶଙ୍କା ଦେଖ, ତେବେ ଜୋର କରି ତତ୍‌କ୍ଷଣାତ୍ ନିମଜ୍ଜିତ ହୋଇ ବିଗତପ୍ରାଣ ହୁଅ- ଦେଖିବ ପ୍ରେମାସ୍ପଦ କେତେ ସୁନ୍ଦର, କିପରିଭାବେ ତୁମକୁ ଆଲିଙ୍ଗନ କରିଅଛନ୍ତି । ୩୫୭

ଯଦି ଏତେ ଟିକିଏ ଲୋକନିନ୍ଦା, ଉପହାସ, ସ୍ୱଜନାନୁରକ୍ତି, ସ୍ୱାର୍ଥହାନି, ଅନାଦର, ଆତ୍ମ ବା ପରଗଞ୍ଜନା ତୁମର ପ୍ରେମାସ୍ପଦଙ୍କଠାରୁ ତୁମକୁ ଦୂରରେ ରଖିପାରେ, ତେବେ ତୁମର ପ୍ରେମ କେତେ କ୍ଷୀଣ- ତା' ନୁହେଁ କି ? ୩୫୮

କୌଣସି କଥା 'ଆଜି ବୁଝିଛି ପୁଣି କାଲି ବୁଝାଯାଉନାହିଁ- ପ୍ରହେଳିକା' ଇତ୍ୟାଦି କହି ଶୃଗାଳ ସାଜନାହିଁ- କାରଣ ଇତର ଜନ୍ତୁମାନେ ମଧ୍ୟ ଯାହା ବୁଝନ୍ତି ତାହା ଭୁଲନ୍ତି ନାହିଁ । ତେଣୁ, ଏହିପ୍ରକାର କହିବାଟାହିଁ ଦୁଷ୍ଟ ବା ଅସ୍ଥିର-ବୁଦ୍ଧିର ପରିଗ୍ରାହକ । ୩୫୯

ଆଜି ଉପକୃତ ହୋଇଛି କହି କାଲି ପୁଣି ସ୍ୱାର୍ଥାନ୍ଧ ହୋଇ ଅପକୃତ ହେବାର ବାହାନା କରି ଅକୃତଜ୍ଞତାକୁ ଡାକିଆଣ ନାହିଁ । ଏହାଠାରୁ ଇତରତା ଆଉ କ'ଣ ଅଛି ? ଯା'କୁ ତା'କୁ ଜିଜ୍ଞାସା କର ।୩୬୦

ମୂର୍ଖତା ନ ଥିଲେ ଉପକୃତର କୁତ୍ସାରେ ଉପକାରୀକୁ ନିନ୍ଦିତ କରାଯାଏ ନାହିଁ । ୩୬୧

ଉପକାରୀ ଯେତେବେଳେ ଉପକୃତ ନିକଟରେ ବିଧ୍ୱସ୍ତ ହୁଏ, ସେତେବେଳେ ମୂଢ଼ ଅହଂ କୃତଜ୍ଞତା ରୂପକ ଅର୍ଗଳ ଭାଙ୍ଗି ଦମ୍ଭ-କଣ୍ଟକାକୀର୍ଣ୍ଣ ମୃତ୍ୟୁପଥ ଉନ୍ମୁକ୍ତ କରେ । ୩୬୨

ଆଶ୍ରିତର ନିନ୍ଦାରେ ଯିଏ ଆଶ୍ରୟକୁ କୁତ୍ସିତ ବିବେଚନା କରନ୍ତି- ବିଶ୍ୱାସଘାତକତା ତା'ର ପଶ୍ଚାତ୍ ଅନୁସରଣ କରେ । ୩୬୩

ପ୍ରିୟଙ୍କ ପ୍ରତି ଭଲପାଇବା ବା ମଙ୍ଗଳବିହୀନ କର୍ମ କେବେହେଲେ ପ୍ରେମର ପରିଗ୍ରାହକ ନୁହେଁ । ୩୬୪

ପ୍ରିୟତମଙ୍କ ପାଇଁ କିଛି କରିବାକୁ ଇଚ୍ଛା ହୁଏନାହିଁ-, ଅଥଚ ଖୁବ୍ ଭଲପାଏ-, ଏକଥା ବି ଯାହା, ଆଉ, ସୁନାର ପିତଳ ଘୁଘୁ କହିବା ମଧ୍ୟ ତାହା । ସ୍ୱାର୍ଥବୁଦ୍ଧି ହିଁ ପ୍ରାୟ ଉକ୍ତପ୍ରକାର ଭଲପାଏ, ତେଣୁ ସେହିପ୍ରକାର ନିଷ୍କାମ-ଧର୍ମାକ୍ରାନ୍ତ ଭଲପାଇବା ଦେଖି ସାବଧାନ ହେବା ଭଲ, ନତୁବା ବିପଦର ସମ୍ଭାବନା ହିଁ ଅଧିକ । ୩୬୫

ଭଲପାଅ- ଅଥଚ ସେ ତୁମ ଉପରେ ଜୋର୍ ବା ଆଧିପତ୍ୟ, ଶାସନ, ଅପମାନ, ଅଭିମାନ, କିମ୍ବା ଜିଦ୍ କରିଲେହିଁ ସୁଖ ନ ହୋଇ ବରଂ ଓଲଟା ହୁଏ, ବା ମୂଳପୋଛ ହୋଇଯାଏ,- ମୁଁ କହୁଛି, ତୁମେ ଠକିଯିବ ଓ ଠକାଇବ ନିଶ୍ଚୟ- ଯେତେଦିନ ତୁମେ ଏହିପରି ଥିବ,- ତେଣୁ ଏବେହୁଁ ସାବଧାନ ହୁଅ । ୩୬୬

ପ୍ରେମର ମୋହ- ବାଧା ପାଇଲେହିଁ ବୃଦ୍ଧି, ପ୍ରେମାସ୍ପଦଙ୍କ ଅତ୍ୟାଗ୍ରହରେ ମଧ୍ୟ ଘୃଣା ଆସେନାହିଁ, ବିଚ୍ଛେଦରେ ସତେଜ ହୁଏ, ମଣିଷକୁ ମୂଢ଼ କରେନାହିଁ, ଚିରଦିନ ଅତୃପ୍ତି, ଥରେ ସ୍ପର୍ଶ କଲେ ଆଉ ତ୍ୟାଗ ହୁଏନାହିଁ- ଅପରିବର୍ତ୍ତନୀୟ । ୩୬୭

କାମର ମୋହ- ବାଧାରେ କ୍ଷୀଣ, କାମର ଅତ୍ୟାଗ୍ରହରେ ବା ଯେପରି ଗ୍ରହିବା ସେପରି ନ ପାଇଲେ ଘୃଣା, ବିଚ୍ଛେଦରେ ଭୁଲ୍, ମଣିଷକୁ କାପୁରୁଷ ଓ ମୂଢ଼ କରିପକାଏ, ଭୋଗରେହିଁ ତୃପ୍ତି ଓ ବିଷାଦ, ଚିରଦିନ ରହେନାହିଁ- ପରିବର୍ତ୍ତନୀୟ । ୩୬୮

ଗରୀୟାନ୍ ହୁଅ, କିନ୍ତୁ ଗର୍ବିତ ହୁଅନାହିଁ । ୩୬୯

ଯଦି ମୁଗ୍ଧ କରିବାକୁ ଗ୍ରହ, ତେବେ ନିଜେ ସଂପୂର୍ଣ୍ଣଭାବେ ମୁଗ୍ଧ ହୁଅ । ୩୭୦

ଯଦି ସୁନ୍ଦର ହେବାକୁ ଇଚ୍ଛାଥାଏ ତେବେ ବିଶ୍ୱରେ ମଧ୍ୟ ସୁନ୍ଦର ଦେଖ । ୩୭୧

ଏକାନୁରକ୍ତି, ତୀବ୍ରତା ଓ କ୍ରମାଗତିରେହିଁ ଜୀବନର ସୌନ୍ଦର୍ଯ୍ୟ ଓ ସାର୍ଥକତା । ୩୭୨

ବହୁ ଭଲପାଇବା ଯେ ଏକ ଭଲପାଇବାକୁ ଟଳାଇ ବା ବିଚ୍ଛିନ୍ନ କରିପାରେ ନାହିଁ, ସେହି ଭଲପାଇବାହିଁ ପ୍ରେମର ଭଗିନୀ । ୩୭୩

ଭଲମନ୍ଦ ବିଗ୍ରହ କରି ବିଧ୍ୱସ୍ତ ହେବା ଅପେକ୍ଷା ସତ୍‌ରେ (ଗୁରୁଙ୍କ ପ୍ରତି) ଆକୃଷ୍ଟ ହୁଅ, ନିର୍ବିଘ୍ନରେ ସଫଳ ହେବ ନିଶ୍ଚୟ୍ । ୩୭୪

ଦୁର୍ବଳତା ସମୟ୍‌ରେ ସୁନ୍ଦର ଓ ସବଳତାର ଚିନ୍ତା କର, ଆଉ ଅହଙ୍କାରରେ ପ୍ରିୟ୍ ଓ ଦୀନତାର ଚିନ୍ତା କର- ମାନସିକ ସ୍ୱାସ୍ଥ୍ୟ ଅକ୍ଷୁର୍ଣ୍ଣ ରହିବ । ୩୭୫

ଦୋଷ ଦେଖି ଦୁଷ୍ଟ ହୁଅନାହିଁ, ଆଉ ତୁମଠାରେ ସଂଲଗ୍ନ ସମସ୍ତଙ୍କୁ ଦୁଷ୍ଟ କରିପକାଅ ନାହିଁ । ୩୭୬

ତାଙ୍କୁ ଦିଅ- ଗ୍ରହନାହିଁ- ପାଇଲେ ଆନନ୍ଦିତ ହୁଅ । ୩୭୭

ତୁମେ ତାଙ୍କର ଇଚ୍ଛାଧୀନ ହୁଅ, ତାଙ୍କୁ ତୁମର ଇଚ୍ଛାଧୀନ କରିବା ପାଇଁ ଚେଷ୍ଟା କରନାହିଁ- କାରଣ, ତୁମ ନିକଟରେ ସେ ହିଁ ସୁନ୍ଦର । ୩୭୮

ମିଳନର ଆକୁଳତାକୁ କଦାପି ତ୍ୟାଗ କରନାହିଁ, ତା’ହେଲେ ବିରହର ବ୍ୟଥା ମଧୁର ହେବନାହିଁ- ଆଉ, ଦୁଃଖ ଭିତରେ ଶାନ୍ତିକୁ ଅନୁଭବ କରିପାରିବ ନାହିଁ । ୩୭୯

ଯା’ର ଉପରେ ତୁମର ଭାବିବା, କରିବା ଓ ବୋଧ ଯେତିକି ଓ ଯେପରି, ତା’ଉପରେ ତୁମର ଆସକ୍ତି, ଆକର୍ଷଣ, ବା ଭଲପାଇବା ସେତିକି ଓ ସେହିପରି । ୩୮୦

ଯାହାଙ୍କଠାରେ ସର୍ବସ୍ୱ ବିକି ଦେଇଛ- ସେ ହିଁ ତୁମର ଭଗବାନ, ଆଉ ସେ ହିଁ ତୁମର ପରମ ଗୁରୁ । ୩୮୧

*******************************************************************************

ଯେପରି କରି ଯାହା ପାଇବାକୁ ହୁଏ, ତାହା ନ କରି ସେଥିପାଇଁ ଦୁଃଖିତ ହୁଅନାହିଁ । ୩୮୨

କରିବା ଆଗରୁ ଦୁଃଖ କରିବା ନ ପାଇବାକୁ ହିଁ ଡାକିଆଣେ । ୩୮୩

ପାଇବାକୁ ହେଲେହିଁ- ତା’ଯାହାବି ହେଉ, ଶୁଣିବାକୁ ହେବ ତାହା କିପରି ପାଇବାକୁ ହୁଏ- ଆଉ ଠିକ୍ ଠିକ୍ ତାହା କରିବାକୁ ହେବ- ନ କରି ପାଇବା ପାଇଁ ଉଦ୍‌ଗ୍ରୀବ ହେବା ଅପେକ୍ଷା ବୋକାମି ଆଉ କ’ଣ ଅଛି ? ୩୮୪

ନିଶ୍ଚୟ୍ ଜାଣ- କରିବାହିଁ ପାଇବାର ଜନନୀ । ୩୮୫

କରିବାଟା ଯେତେବେଳେ ଗ୍ରହିବାକୁ ଅନୁସରଣ କରେ- ତା'ର କୃତାର୍ଥତା ସେତେବେଳେ ସମ୍ମୁଖରେ ଛିଡାହୁଏ । ୩୮୬

ମଣିଷର ଆକାଂକ୍ଷିତ ମଙ୍ଗଳ ତାହାର ଅଭ୍ୟସ୍ତ ସଂସ୍କାରର ଅନ୍ତରାଳରେ ଥାଏ, ଆଉ ମଙ୍ଗଳଦାତା ସେତେବେଳେହିଁ ଦଣ୍ଡିତ ହୁଅନ୍ତି- ଯେତେବେଳେହିଁ ପ୍ରଦତ୍ତ ମଙ୍ଗଳର ଅଭ୍ୟସ୍ତ ସଂସ୍କାରର ସଙ୍ଗେ ବିରୋଧ ଉପସ୍ଥିତ ହୁଏ- ଆଉ, ସେଥିଯୋଗୁଁ ପ୍ରେରିତ ପୁରୁଷ ସ୍ୱଦେଶରେ କୁତ୍ସାମଣ୍ଡିତ ହୁଅନ୍ତି । ୩୮୭

ପ୍ରକୃତି ସେହିମାନଙ୍କୁ ଧିକ୍କାର କରେ, ଯେଉଁମାନେ ପ୍ରତ୍ୟକ୍ଷକୁ ଅବଜ୍ଞା ବା ଅଗ୍ରାହ୍ୟ କରି ପରୋକ୍ଷକୁ ଆଲିଙ୍ଗନ କରନ୍ତି । ୩୮୮

ଆଉ, ପରୋକ୍ଷ ଯାହାର ପ୍ରତ୍ୟକ୍ଷକୁ ରଞ୍ଜିତ ଓ ଲାଞ୍ଛିତ କରେ- ସେହିମାନେହିଁ ଫାଙ୍କିର ଅଧିକାରୀ ହୁଅନ୍ତି । ୩୮୯

****************************************************************************************

ଯାହା ବୃଦ୍ଧିପ୍ରାପ୍ତ ହୋଇ ଯାହାକିଛି ହୋଇ ମଧ୍ୟ ତାହାହିଁ ରହିଛି- ତାହାହିଁ ବ୍ରହ୍ମ । ୩୯୦

ଜଗତର ସମସ୍ତ ଐଶ୍ୱର୍ଯ୍ୟ- ଜାଣିବା, ଭଲପାଇବା ଓ କର୍ମ- ଯାହାଙ୍କ ଭିତରେ ସହଜ-ଉତ୍ସାରିତ, ଆଉ ଯାହାଙ୍କ ପ୍ରତି ଆସକ୍ତିରେ ମଣିଷର ବିଚ୍ଛିନ୍ନ ଜୀବନ ଓ ଜଗତର ସମସ୍ତ ସମସ୍ୟାର ଚରମ ସମାଧାନ ଲାଭ ହୁଏ- ସେ ହିଁ ମଣିଷର ଭଗବାନ । ୩୯୧

ଭଗବାନଙ୍କୁ ଜାଣିବା ମାନେହିଁ ସମସ୍ତଟାକୁ ବୁଝିବା ବା ଜାଣିବା । ୩୯୨

ଯାହାଙ୍କର କୌଣସି ମୂର୍ତ୍ତ ଆଦର୍ଶରେ କର୍ମମୟ ଅଟୁଟ ଆସକ୍ତି- ସମୟ ବା ସୀମାକୁ ଅତିକ୍ରମ କରି ତାହାଙ୍କୁ ସହଜ ଭାବରେ ଭଗବାନ କରି ତୋଳିଛି,- ଯାହାଙ୍କର କାବ୍ୟ, ଦର୍ଶନ ଓ ବିଜ୍ଞାନ ମନର ଭଲମନ୍ଦ ସଂସ୍କାରଗୁଡିକୁ ଭେଦ କରି ସେହି ଆଦର୍ଶରେହିଁ ସାର୍ଥକ ହୋଇ ଉଠିଛି- ସେ ହିଁ ସଦ୍‌ଗୁରୁ । ୩୯୩

ଯାହାଙ୍କର ମନ ସତ୍ ବା ଏକାସକ୍ତିରେ ପୂର୍ଣ୍ଣ- ସେ ହିଁ ସତ୍ ବା ସତୀ । ୩୯୪

ଆଦର୍ଶରେ ମନ ସମ୍ୟକ୍ ପ୍ରକାରେ ନ୍ୟସ୍ତ କରିବାର ନାମ- ସନ୍ୟାସ । ୩୯୫

କୌଣସି ବିଷୟରେ ମନ ସମ୍ୟକ୍ ଭାବରେ ଲାଗି ରହିବାର ନାମ ସମାଧି । ୩୯୬

ନାମ ମଣିଷକୁ ତୀକ୍ଷ୍ଣ କରେ, ଆଉ ଧ୍ୟାନ ମଣିଷକୁ ସ୍ଥିର ଓ ଗ୍ରହଣକ୍ଷମ କରେ । ୩୯୭

ଧ୍ୟାନ ମାନେହିଁ କୌଣସି କିଛି ଗୋଟିଏ ଚିନ୍ତା ନେଇ ଲାଗି ରହିବା । ଆଉ, ତାହାହିଁ ଆମ୍ଭେମାନେ ବୋଧ କରିପାରୁ- ଯାହାକି ଆମ୍ଭମାନଙ୍କର ଲାଗି-ରହିବାରେ ବିକ୍ଷେପ ଆଣିଦିଏ, କିନ୍ତୁ ଭାଙ୍ଗି ଦେଇପାରେ ନାହିଁ । ୩୯୮

ବିରକ୍ତ ହେବା ମାନେହିଁ ବିକ୍ଷିପ୍ତ ହେବା । ୩୯୯

ତୀକ୍ଷ୍ଣ ହୁଅ, କିନ୍ତୁ ସ୍ଥିର ହୁଅ, - ସମସ୍ତ ଅନୁଭବ କରିପାରିବ । ୪୦୦

କୌଣସି-କିଛିରେହିଁ ଯୁକ୍ତ ହେବା ବା ଏକମୁଖୀ ଆସକ୍ତିର ନାମ ହିଁ ଯୋଗ । ୪୦୧

କୌଣସି-କିଛି ଦ୍ୱାରା ପ୍ରତିହତ ହେଲେ ଯାହା ନିଜକୁ ପ୍ରତିଷ୍ଠିତ କରିବାକୁ ଚ୍ଛେ ତାହାହିଁ ଅହଂ (self) । ଅହଂକୁ ଶକ୍ତ କରିବା ମାନେହିଁ ଅନ୍ୟକୁ ନ ଜାଣିବା । ୪୦୨

ବସ୍ତୁ-ବିଷୟକ ସମ୍ୟକ୍ ଦର୍ଶନ ଦ୍ୱାରା ତନ୍ନତନରେ ମନର ନିବୃତ୍ତି ଯେଉଁମାନଙ୍କର ହୋଇଛି- ସେହିମାନେହିଁ ଋଷି । ୪୦୩

ମନର ସର୍ବପ୍ରକାର ଗ୍ରନ୍ଥିର (ସଂସ୍କାରର) ସମାଧାନ ବା ମୋଚନ ହୋଇ ଏକ-ରେ ସାର୍ଥକ ହେବା ହିଁ ମୁକ୍ତି । ୪୦୪

ଯେ ଭାବ ଓ କର୍ମ ମଣିଷକୁ କାରଣମୁଖୀ କରିଦିଏ,- ତାହାହିଁ ଆଧ୍ୟାତ୍ମିକତା । ୪୦୫

ଯେ ତୁଳନା ଅନ୍ତର୍ନିହିତ କାରଣକୁ ଫୁଟାଇ ତୋଳେ- ତାହାହିଁ ପ୍ରକୃତ ବିଗ୍ରହ । ୪୦୬

କୌଣସି ବସ୍ତୁକୁ ଲକ୍ଷ୍ୟକରି ତାହାର ସ୍ୱରୂପ ନିର୍ଦ୍ଦେଶକ ବିଶ୍ଳେଷଣ ହିଁ- ଯୁକ୍ତି । ୪୦୭

କୌଣସି କାର୍ଯ୍ୟକରି- ବିଗ୍ରହ ଦ୍ୱାରା ତାହାର ଭଲମନ୍ଦ ଅନୁଭବ କରି ଯେଉଁ ତାପ ହେତୁ ମନ୍ଦ ପ୍ରତି ବିରତି ଆସେ- ତାହାହିଁ ଅନୁତାପ । ୪୦୮

ଯେଉଁଠାକୁ ଗମନ କରିଲେ ମନର ଗ୍ରନ୍ଥିର ମୋଚନ ବା ସମାଧାନ ହୁଏ- ତାହାହିଁ ତୀର୍ଥ । ୪୦୯

ଯାହା କରିଲେ ଅସ୍ତିତ୍ୱକୁ ରକ୍ଷା କରିହୁଏ- ତାହାହିଁ ପୁଣ୍ୟ । ୪୧୦

ଯାହା କରିଲେ ରକ୍ଷା ପାଇବାରୁ ପତିତ ହୁଏ- ତାହାହିଁ ପାପ । ୪୧୧

ଯାହାର ଅସ୍ତିତ୍ୱ ଅଛି ଏବଂ ତା'ର ବିକାଶ ଅଛି ତାହାହିଁ ସତ୍ୟ (Real) । ୪୧୨

ଯାହା ଧାରଣା କରିବାରେ ମନର ନିଜତ୍ୱ ଅକ୍ଷୁର୍ଣ୍ଣ ରହେ- ତାହାହିଁ ସସୀମ । ୪୧୩

ଯାହା ଧାରଣା କରିବାକୁ ଯାଇ ମନ ନିଜତ୍ୱ ହରାଇ ବସେ- ତାହାହିଁ ଅନନ୍ତ ବା ଅସୀମ । ୪୧୪

**ଶାନ୍ତି ଶାନ୍ତି ଶାନ୍ତି**

